# ପାଠ୍ୟସଞ୍ଚୟ

୧ମ ଶ୍ରେଣୀ

● ପ୍ରକାଶକ :—

ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନ

# ★ ପାଠ୍ୟ - ଖସଡ଼ା ★
## ( ସ୍କିମ୍ )



## ( ପ୍ରଥମ ଶ୍ରେଣୀ ନିମନ୍ତେ )




ଲେଖକ:- ଶ୍ରୀ କାଶୀନାଥ ନାୟକ

ଅବସରପ୍ରାପ୍ତ ଶିକ୍ଷକ, (ରାଷ୍ଟ୍ରପତିଙ୍କ ଦ୍ୱାରା ପୁରସ୍କୃତ)


(ନୂତନ ସିଲବସ ଅନୁସାରେ ପରିବର୍ତ୍ତିତ ଦ୍ୱିତୀୟ ସଂସ୍କରଣ)


ପ୍ରକାଶକ:—— ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନ





ମୂଲ୍ୟ — ଟ ୨ - ୫୦ (ଦୁଇଟଙ୍କା ପଚାଶ ପଇସା ମାତ୍ର)

# ★ ସୂଚୀପତ୍ର ★





# ପାଠ୍ୟ ଖସଡ଼ା ବା ସ୍କିମ୍

## ପ୍ରଥମ – ଶ୍ରେଣୀ

**ବର୍ଷ ମଧ୍ୟରେ ସପ୍ତାହ ସଂଖ୍ୟା—୪୦**

| | | | | |
|---|---|---|---|---|
| ଯଥା | ଜୁନ୍ — | ୧ | ଡିସେମ୍ବର — | ୩ |
| | ଜୁଲାଇ — | ୪ | ଜାନୁଆରୀ — | ୪ |
| | ଅଗଷ୍ଟ — | ୪ | ଫେବୃୟାରୀ — | ୪ |
| | ସେପ୍‌ଟେମ୍ବର — | ୪ | ମାର୍ଚ୍ଚ — | ୩ |
| | ଅକ୍ଟୋବର — | ୩ | ଏପ୍ରିଲ — | ୪ |
| | ନଭେମ୍ବର — | ୪ | ମଇ — | ୨ |
| | | | ମୋଟ | ୪୦ ସପ୍ତାହ |

**ସପ୍ତାହ ମଧ୍ୟରେ ପିରିୟଡ଼ ସଂଖ୍ୟା —**

| | |
|---|---|
| ଗଣିତ- | ୧୨ |
| ମାତୃଭାଷା- | ୬ |
| ମାତୃଭାଷାସମ୍ବନ୍ଧୀୟ- | ୬ (ଗଳ୍ପ ୨, ପଦ୍ୟାବୃତ୍ତି ୨, କଥୋପକଥନ ୨) |
| ପାରିପାର୍ଶ୍ୱିକ ଶିକ୍ଷା- | ୬ |
| ଚିତ୍ରାଙ୍କନ- | ୧ |
| ହସ୍ତକର୍ମ- | ୧ |
| କ୍ରୀଡ଼ା ଓ ଆସନ ଶିକ୍ଷା - | ୨ |
| ବାଳସଭା - | ୨ |

ମୋଟ— ୩୬ ପିରିୟଡ଼ ହିସାବରେ ରୁଟିନ କରାଯିବ । ସ୍କୁଲ ଆରମ୍ଭରୁ ୨୦ ମିନିଟ୍ ସଫାଇ ଓ ସମୂହ ପ୍ରାର୍ଥନା ପାଇଁ ରହିବ ତା ପରଠାରୁ ୧ମ ପିରିଅଡ଼ ଆରମ୍ଭ ହେବ । ବିଭିନ୍ନ ସ୍ଥାନର କର୍ତ୍ତୃପକ୍ଷଙ୍କ ସର୍କୁଲରର ବିଭିନ୍ନତା ଦୃଷ୍ଟିରୁ ଶିକ୍ଷକ ବନ୍ଧୁମାନେ ଏକ ସୁଶୃଙ୍ଖଳିତ ରୁଟିନ୍ ପ୍ରସ୍ତୁତ କରିବେ । ସେଥିରେ ଉଲ୍ଲିଖିତ ବିଷୟ ଗୁଡ଼ିକ ସ୍ଥାନ ପାଇବାର ବ୍ୟବସ୍ଥା କରିବେ । ଶନିବାର ବ୍ୟତୀତ ଅନ୍ୟଦିନ ବାଳସଭା ରଖିବେ ନାହିଁ । ଲଗ ଲଗ ୨ଟି ପିରିଅଡ଼ ବାଳସଭା ପାଇଁ ରହିବ ଓ ସେଥିରୁ ସମ୍ବାଦ ସଂଗ୍ରହ, ପରିବେଷଣ, କବିତା ପ୍ରତିଯୋଗିତା, ଗାରେଡ଼ି ଆଦି କରାଯିବ ।

ସ୍କିମ୍ ଏକ ଆଦର୍ଶ । ଶିକ୍ଷକଙ୍କ ଜାଣିବା ପାଇଁ ଏଥିରେ କେତେକ ସୂଚନା ଦିଆଯାଇଛି ମାତ୍ର ଆବଶ୍ୟକ ସ୍ଥଳେ ପରିବର୍ତ୍ତନ ଓ ପରିବର୍ଦ୍ଧନ, ସଂକ୍ଷେପ କରିବା ଏବଂ ନୂତନ ବିଷୟର ଅବତାରଣା କରିବାରେ କିଛି ବାଧା ନାହିଁ ।



# ଶ୍ରେଣୀ—ପ୍ରଥମ

## ବିଷୟ—'ଗଣିତ' ସପ୍ତାହକୁ ୧୨ ପିରିଅଡ଼

ସୂଚନା:— ପ୍ରଥମ ଶ୍ରେଣୀରେ ଗଣିତ ଶିକ୍ଷା ଦେବା ସମୟରେ ଶିକ୍ଷକ ଚତୁରତା ସହକାରେ; କୋମଳମତି ଛାତ୍ରଛାତ୍ରୀଙ୍କ ଆଗରେ ପାଠ ଉପସ୍ଥାପିତ କରିବେ । ଶିକ୍ଷାଦାନ ସମୟରେ, ଗୁଳି, କାଠି, ମଞ୍ଜି, ଫୁଲ, ଫଳ ଆଦି ବିଭିନ୍ନ ପ୍ରକାର ପଦାର୍ଥ, ମଡ଼େଲ, ଚିତ୍ର ଏବଂ ଗଣନକ ଯନ୍ତ୍ରର ସାହାଯ୍ୟ ନେବେ ।

ଗଣିତ ୧୨ ପିରିଅଡ଼ ମଧ୍ୟରୁ ୬ ପିରିଅଡ ପାଠଦାନରେ ବାକି ୬ ପିରିଅଡ଼ ପାଠସାଙ୍ଗ ଆଲୋଚନାରେ ବ୍ୟୟ କରାଯିବ ।

ମୌଖିକ ପ୍ରଶ୍ନର ବହୁଳ ଆଲୋଚନା କରାଇବେ ।

ମୋଟ ୪୦ ସପ୍ତାହ ୪୦ × ୬ = ୨୪୦ ପାଠ ।

### ଜୁନ୍ ୧ ସପ୍ତାହ — ୬ ପାଠ

୧ ଗଣିତର ଧାରଣା ପାଇଁ ବିଭିନ୍ନ ପଦାର୍ଥ, ଗୋଲି, କାଠି, ମଞ୍ଜି ଇତ୍ୟାଦି
ରୁ ସାହାଯ୍ୟରେ ଗଣିବାର ଅଭ୍ୟାସ କରାଇବା ଓ ସଂଖ୍ୟାଲିଖନ ପାଇଁ ସିଧା, ବଙ୍କା
୬ । ଗାର ଆଦି ଟାଣିବାର ଅଭ୍ୟାସ କରିବା ।

### ଜୁଲାଇ ୪ ସପ୍ତାହ — ୨୪ ପାଠ

୧ । ୧, ଏକର ପରିଚୟ ।

୨ । ୧, ର ଲିଖନ ।

୩ । ୨, ଦୁଇର ପରିଚୟ ଲିଖନ ପଠନ ।

୪ । ୩, ତିନିର ପରିଚୟ, ପଠନ ଲିଖନ ।

୫ । ୪, ଚାରିର ପରିଚୟ, ପଠନ ଲିଖନ ।

୬ । ଗୋଲି, କାଠି ସାହାଯ୍ୟରେ
ଓ ୧ + ୧ + ୧ + ୧ = ୪ ପରିଚୟ ଲିଖନ ।

୭ । ୫ର ପଠନ, ଲିଖନ ଓ ଗଣନ ।

୮ । ୧ ଠାରୁ ୫ ଯାଏ ସଂଖ୍ୟାମାନଙ୍କର ପୁନରାବୃତ୍ତି ।

୯ ୨ ର ବିଶ୍ଳେଷଣ ଶିକ୍ଷା ।

ରୁ ଉଦାହରଣ:— ୧ + ୧ = ୨

୧୨ । ୨ − ୧ = ୧

୨ − ୨ = ୦

ବି. ଦ୍ର.— ବିଭିନ୍ନ ପଦାର୍ଥ ସାହାଯ୍ୟରେ '୨'ର ବିଶ୍ଳେଷଣ ।

୧୩ ୩ର "ବିଶ୍ଳେଷଣ ।

ରୁ ଉଦାହରଣ:- ୧ + ୧ + ୧ = ୩

୧୫ । ୨ + ୧ = ୩

୩ − ୧ = ୨

୩ − ୨ = ୧

୩ − ୩ = ୦

୧୬ ୪ର ବିଶ୍ଳେଷଣ ।

ରୁ ୧ + ୧ + ୧ + ୧ = ୪

୨୦ । ୨ + ୧ + ୧ = ୪

୨ + ୨ = ୪

୩ + ୧ = ୪

୪ − ୩ = ୧

୪ − ୨ = ୨

୪ − ୧ = ୩

୪ − ୨ − ୧ = ୧

୪ − ୪ = ୦

୨୧ ସୂଚନା:— ଭିନ୍ନ ଭିନ୍ନ ପ୍ରଶ୍ନ ମାଧ୍ୟମରେ ବିଶ୍ଳେଷଣ, ଶିକ୍ଷାଦାନ ବିଶେଷ ଫଳପ୍ରଦ
ରୁ ହୋଇଥାଏ । ପିଲ୍ଲମାନେ ବିଶ୍ଳେଷଣ ଗୁଡ଼ିକୁ ସ୍ଲେଟରେ ଲେଖିବେ ।
୨୪ । ବିଶ୍ଳେଷଣ ସମ୍ବନ୍ଧୀୟ ପ୍ରଶ୍ନମାନ ଏକା ପ୍ରକାରର ନ ହୋଇ ବିଭିନ୍ନ
ଧରଣର ହେବ ।

ଉଦାହରଣ:—

(କ) ତୁମ ପାଖରେ ଗୋଟିଏ ଗୋଲି ଥିଲା । ମୁଁ ଗୋଟିଏ ଗୋଲି ଦେଲି । ତୁମ ପାଖରେ କେତୋଟି ଗୋଲି ହେଲା ?

(ଖ) ତୁମ ପାଖରେ ୨ଟି ଆମ୍ବ ଥିଲା । ମୁଁ ଗୋଟିଏ ନେଇଗଲି । ତୁମ ପାଖରେ କେତୋଟି ଆମ୍ବ ରହିଲା ?

୨ ରୁ ୨ ଗଲେ କେତେ ରହିବ ?

(ଗ) ତୁମ ସାହିରୁ ୩ଜଣ ଓ ଆର ସାହିରୁ ୧ଜଣ ପିଲା ମିଶି ଖେଳିଲେ । ମୋଟରେ କେତେ ଜଣ ପିଲା ଖେଳିଲେ ?

(ଘ) ଗୋଟିଏ ପଡ଼ିଆରେ ୩ଟି ଗାଈ ଗୋଟିଏ ଛେଳି ଚରୁଥିଲେ । ସେଥିରୁ ଗୋଟିଏ ଗାଈ ଗୋଟିଏ ଛେଳି ବଣ ଆଡ଼େ ଚାଲିଗଲେ । ତେବେ ପଡ଼ିଆରେ କେତୋଟି ଜୀବ ରହିଲେ ?

ସୂଚନା:- ଏହି ପ୍ରଣାଳୀରେ ୧ ଠାରୁ ୫ ପର୍ଯ୍ୟନ୍ତ ସଂଖ୍ୟା ମାନଙ୍କର ମୌଖିକ ପ୍ରଶ୍ନ ୨ଟି ପିଲାଙ୍କୁ ସମାଧାନ କରାଯିବ ।

## ଅଗଷ୍ଟ ୪ ସପ୍ତାହ ୨୪ ପାଠ

୧ । ୬'ର ପରିଚୟ ପଠନ ଓ ଲିଖନ ।
୨ ୭'ର ପରିଚୟ ପଠନ ଓ ଲିଖନ ।
ରୁ ୮,୯ ଓ ୧୦ର ପରିଚୟ ପଠନ ଓ ଲିଖନ ।
୪ । ୧ ଠାରୁ ୧୦ ଯାଏ ସଂଖ୍ୟା ଗୁଡ଼ିକର ପଠନ, ଲିଖନ ଓ ବିଭିନ୍ନ ପଦାର୍ଥ ସାହାଯ୍ୟରେ ଗଣନ ଶିକ୍ଷା ।

୬ '୫'ର ବିଶ୍ଲେଷଣ :—
ରୁ ୧ + ୧ + ୧ + ୧ + ୧ = ୫
୮ । ୪ + ୧ = ୫
୩ + ୨ = ୫
୨ + ୩ = ୫
୧ + ୪ = ୫

୫ − ୧ = ୪
୫ − ୨ = ୩
୫ − ୩ = ୨
୫ − ୪ = ୧
୫ − ୫ = ୦

୯ରୁ୧୫ । ଏହି ପ୍ରଣାଳୀରେ ୬ ଓ ୭ର ବିଶ୍ଲେଷଣ କରାଯିବ ।

୧୬ରୁ ସୂଚନା:— ଉପରୋକ୍ତ ପଦାର୍ଥ ଓ ସ୍ଲେଟ, ସ୍ଲେଟ ପ୍ରଶ୍ନ
୨୦ । ସାହାଯ୍ୟରେ ବିଶ୍ଲେଷଣ କରାଯିବ ।

ଉଦାହରଣ:—

(କ) ତୁମ ପାଖରେ ୬ଟି କଲମ ଥିଲା । ମାଆ ଗୋଟିଏ ଦେଲେ, ତୁମ ପାଖରେ କେତୋଟି କଲମ ହେଲା ?

(ଖ) ତୁମର ପାଞ୍ଚୋଟି ଫେଣ୍ଡୁ ଫୁଲ ଥିଲା । ସୀତା ୨ଟି ଦେଲା, ତୁମ ପାଖରେ କେତୋଟି ଫେଣ୍ଡୁ ଫୁଲ ହେଲା ?

(ଗ) ସୁରଖଣ୍ଡ କାଠି ଓ ୩ ଖଣ୍ଡ କାଠି ଏକାଠି କରି ଗଣ । କେତେ ଖଣ୍ଡ ହେଲା କହ ।

(ଘ) ୩ଟି କଲମ ସାଙ୍ଗରେ ଆଉ ୪ଟି କଲମ ରଖିଲେ ସବୁସାକୁ କେତୋଟି ହେବ ?

(ଙ) ୨ଟି ବଗ, ୫ଟି ବଣି ମିଶି କେତୋଟି ପକ୍ଷୀ ହେବେ ?

(ଚ) ଟେବୁଲ ଉପରେ ୬ଟି କପ୍ ଓ ଗୋଟିଏ ଗ୍ଲାସ ଅଛି । ତେବେ ଟେବୁଲ ଉପରେ ମୋଟ କେତୋଟି ଜିନିଷ ଅଛି ?

୨ୟ ଉଦାହରଣ :—

(କ) ୭ଟି ରୁଟିରୁ ୩ଖଣ୍ଡ ତମେ ଖାଇଦେଲ । ଆଉ କେତେ ଖଣ୍ଡ ରୁଟି ରହିଲା ?

(ଖ) ୭ଟି କୁକୁଡ଼ାରୁ ୨ଟି କୁକୁଡ଼ା ମରିଗଲେ । ଆଉ କେତୋଟି ରହିଲେ ?

ସୂଚନା:— ଏହି କ୍ରମରେ ୭ରୁ ୭ ଫେରିବା ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରର ମୌଖିକ ପ୍ରଶ୍ନ ସମାଧାନ କରାଯିବ ।

୨୧ରୁ ୨୪ । ପୂର୍ବପାଠମାନଙ୍କର ବିଶ୍ଳେଷଣ ଓ ପୁନରାଲୋଚନା ।

## ସେପ୍ଟେମ୍ବର ୪ ସପ୍ତାହ ୨୪ ପାଠ

୧ । ୧୧ ଓ ୧୨ ସଂଖ୍ୟାର ପରିଚୟ ଓ ଲେଖନ ।

୨ । ୧୩ ଓ ୧୪ ,, ,, ଓ ,, ।

୩ । ୧୫ ଓ ୧୬ ,, ,, ଓ ,, ।

୪ । ୧୭ ଓ ୧୮ ,, ,, ଓ ,, ।

୫ । ୧୯ ଓ ୨୦ ,, ,, ଓ ,, ।

୬ରୁ ୮ । ସଂଖ୍ୟା ଲେଖନର ପୁନରାବୃତ୍ତି ।

୯ରୁ ୧୨ । ୮ର ବିଶ୍ଳେଷଣ ।

୧୩ରୁ ୧୫ । ୯ର ବିଶ୍ଳେଷଣ ।

୧୬ରୁ୧୭ ।   ୧ରୁ ୫ ଯାଏ ସଂଖ୍ୟାର କ୍ରମିକ ଯୋଗ ବିୟୋଗ

ଉଦାହରଣ.—

| ଯୋଗ:- | ବିୟୋଗ:- |
|---|---|
| ୧ | ୫ |
| ୧ | ୧ |
| ୨ | ୪ |
| ୧ | ୧ |
| ୩ | ୩ |
| ୧ | ୧ |
| ୪ | ୨ |
| ୧ | ୧ |
| ୫ | ୧ |
| | ୧ |
| | ୦ |

୧୮ ।   ୧୧ ରୁ ୨୦ ଯାଏ ସଂଖ୍ୟା ମାନଙ୍କର ସ୍ଥାନମୂଲ୍ୟ ଶିକ୍ଷା ଓ ଅଭ୍ୟାସ କରାଇବା ।

୧୯ରୁ୨୦ ।   ୨୧ରୁ ୨୫ ପର୍ଯ୍ୟନ୍ତ ସଂଖ୍ୟାର ପରିଚୟ, ପଠନ ଲିଖନ ଓ ଗଣନ ।

୨୧ରୁ୨୪ ।   ୯ ପର୍ଯ୍ୟନ୍ତ ସଂଖ୍ୟା ମାନଙ୍କର ବିଶ୍ଳେଷଣ ସମ୍ବନ୍ଧୀୟ ବିଭିନ୍ନ ପ୍ରଶ୍ନର ପୁନରାଲୋଚନା ।

୧ମ ପରୀକ୍ଷା ।

## ଅକ୍ଟୋବର ମାସ ୩ ସପ୍ତାହ — ୧୮ ପାଠ

୧ ।   ୧୦ର ବିଶ୍ଳେଷଣ ।

୨ ।   ୨୬ରୁ ୩୦ ଯାଏ ସଂଖ୍ୟାର ପରିଚୟ ଲିଖନ,ପଠନ ଓ ଗଣନ ।

୩ରୁ୬ ।   ୧ ରୁ ୧୦ ଯାଏ ବିଭିନ୍ନ ପଦାର୍ଥ ମାନଙ୍କ ସାହାଯ୍ୟରେ ଯୋଗ ବିୟୋଗର କ୍ରମିକ ଧାରଣା ।

୭ରୁ୯ ।   ୩୧ରୁ ୩୫ ପର୍ଯ୍ୟନ୍ତ ସଂଖ୍ୟାର ପରିଚୟ, ପଠନ ଲିଖନ, ଗଣନ ।

୧୦ରୁ୧୨ ।   ୧୦ ଠାରୁ ୩୫ ଯାଏ ସଂଖ୍ୟା ମାନଙ୍କର କ୍ରମିକ ପଠନ, ଲିଖନ ।

୧୩ ।   ୩ର କ୍ରମିକ ଯୋଗ ୧୫ ପର୍ଯ୍ୟନ୍ତ ।

୧୪ରୁ୧୭ । ୧୦ର ବିଶ୍ଳେଷଣ, ଛୋଟ ଛୋଟ ମୌଖିକ ପ୍ରଶ୍ନ ମାନଙ୍କର ସମାଧାନ ।

୧୭ଓ୧୮ । କାଠି ମଞ୍ଜି ସାହାଯ୍ୟରେ ସ୍ଥାନୀୟମାନ ନିରୂପଣ ।

ସୂଚନା:- ସ୍ଥାନୀୟମାନର ଧାରଣା ଦେବା ସମୟରେ କାଠିବିଡ଼ା ଗୋଲିମାଳ ନିଶ୍ଚୟ ବ୍ୟବହୃତ ହେବ । ଅଭ୍ୟାସ ପାଇଁ ପିଲାମାନେ ଏକଦଶ ଏକ ଏଗାର, ଏକଦଶ ଦୁଇ ବାର ଏହି କ୍ରମରେ ଗଣନ କରିବେ ।

## ନଭେମ୍ବର ମାସ ୪ ସପ୍ତାହ — ୨୪ ପାଠ

୧ । ୩୨ ରୁ ୪୦ ଯାଏ ସଂଖ୍ୟାମାନଙ୍କର ପରିଚୟ ପଠନ, ଲିଖନ ଓ ଗଣନ ।

୨ରୁ୪ । ୧ ଠାରୁ ୪୦ ଯାଏ ସଂଖ୍ୟାମାନଙ୍କର ପୁନରାଲୋଚନା, ଲିଖନ, ପଠନ ।

୫ରୁ୭ । ୧୧ର ବିଶ୍ଳେଷଣ ।

୮ରୁ୧୦ । ୧୨ ର ବିଶ୍ଳେଷଣ ।

ଘର ସ୍ଥାନ— ୨ ଓ ୩ ମଧ୍ୟରେ କେତେ ସ୍ଥାନ ?

୯ ଓ ୭ ମଧ୍ୟରେ କେତେ ସ୍ଥାନ ?

୧୧ରୁ୧୪ । ପୂର୍ବ ପାଠ ମାନଙ୍କର ବିଶ୍ଳେଷଣ ଓ ପୁନରାଲୋଚନା ।

୧୫ରୁ୨୦ । ୨ ର କ୍ରମିକ ଯୋଗ ୧୮ ଯାଏ ।

୨ ର କ୍ରମିକ ବିୟୋଗ ୧୮ ଯାଏ ।

୨୧ରୁ୨୪ । ପୂର୍ବ ପଠିତ ସଂଖ୍ୟା ଗୁଡ଼ିକର ପଠନ ଲିଖନ ଓ ବିଶ୍ଳେଷଣ ସମ୍ବନ୍ଧୀୟ

ସୂଚନା— ଆବଶ୍ୟକ ସ୍ଥଳେ ଫୁଲ କାଠି, ମଞ୍ଜି, ଗଣନ ଯନ୍ତ୍ର ଆଦି ବ୍ୟବହାର କରିବାକୁ ହେବ ।

## ଡିସେମ୍ବର ମାସ ୩ ସପ୍ତାହ ୧୮ ପାଠ

୧ରୁ୩ । ୪୧ରୁ ୪୬ ଯାଏ ସଂଖ୍ୟା ମାନଙ୍କର ପରିଚୟ, ଲିଖନ, ପଠନ ଓ ଗଣନ ।

୪ରୁ୫ । ୧୩ ଓ ୧୪ର ବିଶ୍ଳେଷଣ ଓ ୨୮ ପର୍ଯ୍ୟନ୍ତ ୪ର କ୍ରମିକ ଯୋଗ ।

୬ଓ୭ । ୨୮ ରୁ ୪ ଫେଡ଼ ଫେଡ଼ ୪ ପର୍ଯ୍ୟନ୍ତ ଆସିବ ।

୮ । ପୂର୍ବ ପଠିତ ବିଷୟ ମାନଙ୍କର ବିଶ୍ଳେଷଣ ସଂକ୍ରାନ୍ତୀୟ ପୂର୍ଣ୍ଣ ଆଲୋଚନା ।

୯ଓ୧୦ । ୪୭ ରୁ ୫୦ ଯାଏ ସଂଖ୍ୟାମାନଙ୍କର ପରିଚୟ ଲିଖନ ଓ ପଠନ, ସ୍ଥାନୀୟମାନ ନିରୂପଣ ।

୧୧ଓ୧୨ । ୧୭ର ବିଶ୍ଳେଷଣ ।

୧୩ । ଖାଲି ସ୍ଥାନ ପୂରଣ :—

୧୪ । କ) ୧ ଓ ୭ ମିଶିଲେ ଯେତେ ୪ ଓ — ମିଶିଲେ ସେତିକି ।

ଖ) ୫ ସଙ୍ଗରେ — ମିଶାଇଲେ ୮ ହେବ ?

୧୫ରୁ୧୮ । ମୌଖିକ ପ୍ରଶ୍ନମାନଙ୍କର ବହୁଳ ଆଲୋଚନା ।

## ଜାନୁଆରୀ ମାସ ୪ ସପ୍ତାହ — ୨୪ ପାଠ

୧ରୁ୫ । ୬୧ ରୁ ୭୦ ପର୍ଯ୍ୟନ୍ତ ସଂଖ୍ୟାମାନଙ୍କ ପରିଚୟ ଲିଖନ ଓ ପଠନ ।

୬ରୁ୧୦ । ୧୬ ଓ ୧୭ର ବିଶ୍ଳେଷଣ ।

୧୧ରୁ୧୪ । ୭୧ ରୁ ୭୨ ସଂଖ୍ୟାମାନଙ୍କ ପରିଚୟ, ପଠନ, ଲିଖନ ।

୧୫ଓ୧୬ । ଖାଲି ଘର ପୂରଣ କର ।

| | |
|---|---|
| ୩ | ୬ |
| + ୩ | + — |
| କେତେ — | ୯ |

୧୭ଓ୧୮ ।

| | |
|---|---|
| ୯ | ୧୧ |
| + — | + — |
| ୧୧ | ୧୨ |

୧୯ । ୬୬ ରୁ ୭୦ ଯାଏ ସଂଖ୍ୟାର ପରିଚୟ ଲିଖନ;

୨୦ । ତଳକୁ ଉଚ୍ଚ କ୍ରମରେ ସଜାଇ ଲେଖ—

କ) ୮, ୪, ୨, ୧, ୬, ୩, ୫, ୭

ଖ) ୨, ୪, ୬, ୫, ୩, ୧

୨୧ଓ୨୨ । ଯେପରି ଲେଖାଅଛି ସେହିପରି ଲେଖିବାକୁ ଛାତ୍ରମାନଙ୍କୁ ଅନ୍ୟ ପ୍ରଣାଳୀରେ ଶିକ୍ଷା ଦିଆଯିବ ।

କ) ୨୪, ୨୬, ୨୮, ୩୦

ଖ) ୨୫, — — — —

## ଫେବୃଆରୀ ମାସ ୪ ସପ୍ତାହ — ୨୪ ପାଠ

୧ । ୨୧ ରୁ ୨୫ ପର୍ଯ୍ୟନ୍ତ ସଂଖ୍ୟାର ଲିଖନ ।

୨ । (କହିବେ, ଲେଖିବେ; ପଢ଼ିବେ)

୨୦ ପରେ ୨୧ ୫୩ ପରେ ୫୪ ସେହିପରି

କୁହ, ଲେଖ ପଢ଼ ।

୪୪ ପରେ କେତେ ?

୨୮ ପରେ କେତେ ?

୩ । ୧୭ ର ବିଶ୍ଳେଷଣ

୪ ରୁ ୫ । ୧୭ ସଂଖ୍ୟାର ବିଶ୍ଳେଷଣ ।

୬ । ୧୮, ୨୦ର ବିଶ୍ଳେଷଣ ।

୭ରୁ୯ । ୫ରୁ ୭ର କ୍ରମିକ ଯୋଗ ବିୟୋଗ ୫୦ ଯାଏ କରାଯିବ ।

୧୦ରୁ୧୪ । ୭୭ ରୁ ୮୦ଯାଏ ପଠନ, ଲିଖନ ।

୧୫ରୁ୧୯ । ୫୦ ଯାଏ ସଂଖ୍ୟା ମାନଙ୍କର ସ୍ଥାନୀୟମାନ ଆଲୋଚନା ।

୨୦ରୁ୨୪ । ମୌଖିକ ପ୍ରଶ୍ନ ମାନଙ୍କର ବହୁଳ ଆଲୋଚନା ।

## ମାର୍ଚ୍ଚ ୩ ସପ୍ତାହ — ୧୮ ପାଠ

୧ । ୧୦ ଠାରୁ ୫୦ ଯାଏ ସଂଖ୍ୟାମାନଙ୍କର ପଠନ, ଗଣନ ଓ ସ୍ଥାନୀୟମାନ ପୁନରାଲୋଚନା ।

୨ । ଗୋଲି କାଠି ସହାୟରେ ସ୍ଥାନୀୟମାନ ଆଲୋଚନା ।

୩ଓ୪ । (କ) ଖାଲି ସ୍ଥାନ ପୂରଣ କର: —

୩ ଦଶ ୫ = ୩୫

ସେହିପରି — ୨ ଦଶ ୭ ଯେ କେତେ —

୪ ଦଶ ୮ ଯେ —

(ଖ) ଥିଲ ମିଶିଲ କେତେ ହେଲା: —

୪ଦଶ + ୨ଦଶ = କେତେଦଶ

୫ଦଶ + ୩ଦଶ = କେତେଦଶ

୫ରୁ୯ । ୧ରୁ ୧୦ ଯାଏ ବିଶ୍ଳେଷଣର ପୁନରାଲୋଚନା ।

୧୦ ରୁ ୧୨ । ୫୧ରୁ ୮୦ ଯାଏ ସଂଖ୍ୟାର ପଠନ, ଲିଖନ ।

୧୩ ରୁ ୧୮ । ମୌଖିକ ମାନସାଙ୍କର ବହୁଳ ଆଲୋଚନା ।

## ଅପ୍ରେଲ ୪ ସପ୍ତାହ — ୨୪ ପାଠ

୧ ରୁ ୩ । ୮୦ରୁ ୯୦ ଯାଏ ସଂଖ୍ୟାମାନଙ୍କର ପରିଚୟ୍ ଲେଖନ, ପଠନ ।

୪ ରୁ ୭ । ୯୦ର ୧୦୦ ଯାଏ ସଂଖ୍ୟା ଗୁଡ଼ିକର ଲେଖନ ଓ ପଠନ ।

୭ରୁ୧୦ । ୧ ପଇସି ଠାରୁ ୨୫ ପଇସି ଯାଏ ସରକାର୍ ମୁଦ୍ରାର ପରିଚୟ କରାଇବା ।

୧୧ଓ୧୨ । ମୁଦ୍ରାର ଉପକାରିତା ସମ୍ବନ୍ଧରେ ଧାରଣା, ୫୦ ପଇସିରୁ ୧୦୦ ପଇସା ଯାଏ ଧାରଣା ଦେବା ।

(କ) ଗୋଟିଏ ଦଶ ପଇସି ଓ ଗୋଟିଏ ପାଞ୍ଚ ପଇସି ଅଛୁ । ସମୁଦାୟ କେତେ ପଇସା ହେଲା ?

(ଖ) ୧୦ରେ ୭ ମିଶିଲେ କେତେ ହେବ ?

୧୩ଓ୧୪ । ୧୦ରୁ ୨୦ ଯାଏ ବିଶ୍ଳେଷଣ ।

୧୫ରୁ୧୯ । ୧ ଠାରୁ ୧୦୦ ଯାଏ ସଂଖ୍ୟାମାନଙ୍କର ପଠନ, ଲେଖନ, ଗଣନ । ଥିଲା, ଗଲା, ରହିଲା ଭିତ୍ତିରେ ବାଦ୍ଧ୍ନ ଗାଣିତିକ ପ୍ରଶ୍ନର ସମାଧାନ ।

୨୦ରୁ୨୪ । ମୌଖିକ ପ୍ରଶ୍ନର ବହୁଳ ଆଲୋଚନା; ପ୍ରଚଳିତ ବାଦ୍ଧ୍ନ ମୁଦ୍ରା ମାଧ୍ୟମରେ ୧୦୦ର ପରିଚୟ, ମୁଦ୍ରାର ପରିଚୟ ଓ ବ୍ୟବହାର ।

## ମଇ ୨ ସପ୍ତାହ — ୧୨ ପାଠ

ପୁନରାବୃତ୍ତି ଓ ବାର୍ଷିକ ପରୀକ୍ଷା ।



# ଶ୍ରେଣୀ—ପ୍ରଥମ

## ବିଷୟ— 'ପାରିପାର୍ଶ୍ୱିକ ଶିକ୍ଷା' — ସପ୍ତାହରେ ୬ ପିରିୟଡ

**ସୂଚନା**— ପୂର୍ବ ସିଲାବସରେ ପ୍ରଥମ ଓ ୨ୟ ଶ୍ରେଣୀରେ ସାମାଜିକ ବିଜ୍ଞାନ ଓ ସାଧାରଣ ବିଜ୍ଞାନ ପୃଥକ ପୃଥକ ଭାବରେ ଥିଲା । ମାତ୍ର ପରିବର୍ତ୍ତିତ ନୂତନ ସିଲାବସରେ ଉକ୍ତ ଉଭୟ ବିଷୟକୁ ମିଶାଇ 'ପାରିପାର୍ଶ୍ୱିକ ଶିକ୍ଷା' ନାମ ଦିଆଯାଇଛି । ତେଣୁ ତଦନୁସାରେ ପାଠ୍ୟଖସଡ଼ାରେ ବ୍ୟବସ୍ଥା କରାଯାଇଛି ।

### ଜୁନ୍ ୧ ସପ୍ତାହ — ୬ ପାଠ

୧ । ଆମ ପୃଥିବୀ ବିଷୟରେ ଧାରଣା ।

୨ । ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ।

୩ । ଦିନ ରାତିର ଧାରଣା ।

୪ । ଆମ ଗାଁ ।

୫ । ଆମ ପରିବାର (କେଉଁମାନଙ୍କୁ ନେଇ ପରିବାର ଗଠିତ)

୬ । ଆମ ବନ୍ଧୁବାନ୍ଧବ ।

### ଜୁଲାଇ ୪ ସପ୍ତାହ ୨୪ ପାଠ

୧ ରୁ ୬ । ଆମ ଘର ପାଖରେ ଥିବା ଗଛଲତା । (ଯେଉଁ ଅଞ୍ଚଳରେ ଯେଉଁ ସବୁ ଗଛ ଦେଖାଯାଏ, ପିଲାମାନଙ୍କ ସହିତ ସେ ସମ୍ପର୍କରେ କଥୋପକଥନ ।
(ଆମ୍ବ, ଜାମୁ, ବର, ଅଶ୍ୱତ୍ଥ, ନିମ୍ବ, କରଞ୍ଜ, ବେଲ ଆଦି ।

୭ ରୁ ୧୨ । ଲତା—ଯଥା— କାକୁଡ଼ି, ଜହ୍ନି, ଯୋଇ, କଲରା, ପୋଟଳ, କୁନ୍ଦରୀ ଆଦି ।

୧୩ ଓ ୧୪ । ପରିବାରର କାର୍ଯ୍ୟ ।

୧୫ ରୁ ୧୮ । ପରିବାରରେ ବାପା, ମାଆ ଓ ଅନ୍ୟ ବୟସ୍କ ଲୋକଙ୍କ ଦାୟିତ୍ୱ ।

୧୯ ରୁ ୨୧ । ପରିବାରର ଛୋଟ ପିଲାମାନଙ୍କ ରକ୍ଷଣାବେକ୍ଷଣ ।

୨୨ ରୁ ୨୪ । ପରିବାରର ଭଲ ପାଇଁ ସମସ୍ତେ କିଛି କିଛି କାମ କରନ୍ତି ।

## ଅଗଷ୍ଟ ୪ ସପ୍ତାହ — ୨୪ ପାଠ

୧ ରୁ ୧୨ । ଆମ ପରିଚିତ ଜୀବଜନ୍ତୁଙ୍କ ସଂପର୍କରେ ଆଲୋଚନା ( ଗାଈ, ଛେଳି, ମେଣ୍ଢା, ମଇଁଷି, ଗଧ, ଓଟ, ଘୋଡ଼ା, କୁକୁର, ବିରାଡ଼ି, ଘୁଷୁରି, ଠେକୁଆ, ବାଲୁଆ ଆଦି )

୧୩ ରୁ ୧୬ । ପରିବାରରେ ପିଲାମାନଙ୍କର କାମ ।

୧୭ ରୁ ୧୮ । ଗାଆଁର ଅଧିବାସୀଙ୍କ ସଂପର୍କରେ ଧାରଣା । ( ଛୋଟ ପରିବାର, ବଡ଼ ପରିବାର ସୁବିଧା, ଅସୁବିଧା )

୧୯ ଓ ୨୦ । ଖାଦ୍ୟ ପଦାର୍ଥ କେଉଁଠୁ ସଂଗ୍ରହ କରାଯାଏ, ରକ୍ଷିତ ରଖାଯାଏ ଓ ରନ୍ଧା ହୁଏ ।

୨୧ ଓ ୨୨ । ଆମେ କ'ଣ ଖାଉ ଖାଉ ।

୨୩ ଓ ୨୪ । କେଉଁ ଖାଦ୍ୟ ଖାଇବା ଭଲ ।

## ସେପ୍‌ଟେମ୍ବର ୪ ସପ୍ତାହ — ୨୪ ପାଠ

୧ ରୁ ୭ । ଆମ ପରିଚିତ ପକ୍ଷୀମାନଙ୍କ ସଂପର୍କରେ ( ଶୁଆ, ସାରି, ବଣି, କାଉ, ହଳଦୀବସନ୍ତ କୋଇଲି, ଶାଗୁଣା, ଚିଲ, ବଗ, କୁକୁଡ଼ା, ବାସୁଆ, ଚଟକ, ହଂସ ଆଦି )

୮ ରୁ ୧୨ । ବିଭିନ୍ନ ପଶୁପକ୍ଷୀ ମାନଙ୍କର ସ୍ୱର ଅନୁକରଣ କରି ସେହିପରି ଶବ୍ଦ କରିବା ।

୧୩ ରୁ ୧୬ । ମନୁଷ୍ୟ ଶରୀର ବିଷୟରେ ଧାରଣା ।

୧୭ ରୁ ୨୧ । ଅଙ୍ଗ-ହାତ ଗୋଡ଼; ଆଖି, କାନ, ନାକ, ପାଟି, ଜିଭ; ଦାନ୍ତର କାର୍ଯ୍ୟ ।

୨୨ ରୁ ୨୪ । ଭାତ ଓ ତାଲୁରୁ ଜନ୍ମର ଧାରଣା

## ଅକ୍ଟୋବର ୩ ସପ୍ତାହ — ୧୮ ପାଠ

୧ ରୁ ୯ । ପୂର୍ବ ଆଲୋଚିତ ପଶୁ ପକ୍ଷୀମାନଙ୍କର ବସା, ଖାଦ୍ୟ ସଂପର୍କରେ ଆଲୋଚନା । ଦେହ ସଫା ରଖିବା— ( ଗାଧୋଇବା ଓ ତାହାର ନିୟମ, ମୁଣ୍ଡ କୁଣ୍ଡାଇବା, ନଖ କାଟିବା, ଦାନ୍ତ ଘଷିବା, ପୋଷାକ ପତ୍ର ସଫା ରଖିବା ।

୧୦ ରୁ ୧୮ । ଖାଇବା ପୂର୍ବରୁ ଓ ପରେ ମୁହଁ ହାତ ଧୋଇବା ସଂପର୍କରେ ଆଲୋଚନା ।

## ନଭେମ୍ବର ୪ ସପ୍ତାହ — ୨୪ ପାଠ

୧ ରୁ ୧୨ । ଗୃହପାଳିତ ପଶୁଙ୍କର ବିଭିନ୍ନ ଅଙ୍ଗର କାର୍ଯ୍ୟ । ଗାଈର ଶିଙ୍ଗ, ଲାଞ୍ଜ, ଲୋମ, ଗହ୍ଳା, ଖୁରା । କୁକୁରର ଦାନ୍ତ ନଖ, ଜିଭ । ବିରାଡ଼ିର ଦାନ୍ତ, ନଖ, ନିଶ, ଆଖି, । ମେଣ୍ଢାର ମୁଣ୍ଡ ଆଦି — ସେହିପରି ଅନ୍ୟ ଗୃହପାଳିତ ଜୀବମାନଙ୍କର (ବିଭିନ୍ନ ଅଙ୍ଗର କାର୍ଯ୍ୟ ସଂପର୍କରେ ଆଲୋଚନା କରାଯିବ )

୧୩ ରୁ ୨୪ । ପର୍ବ ପର୍ବାଣୀ—

ତୁମ ଘରେ ପାଳୁଥିବା ପର୍ବ, ପାଖରେ ପାଳନ ହେଉଥିବା ପର୍ବ, ସାଧାରଣ କେତୋଟି ପର୍ବର ନାମ ( ଦୋଳ, ଦଶହରା, ରଜ, ଦିଆଲି, ବଡ଼ଦିନ, ଇଦ୍ ଆଦି ) ପର୍ବପାଳନ କାହିଁକି କରାଯାଏ ?

ଡିସେମ୍ବର ୩ ସପ୍ତାହ ୧୮ — ପାଠ

୧ ରୁ ୯ । ଆମ ଜଣାଶୁଣା ପଶୁ, ପକ୍ଷୀଙ୍କର ଖାଦ୍ୟ ଓ ଆଶ୍ରୟସ୍ଥଳ, ଆମେ ତାଙ୍କଠାରୁ କି ଉପକାର ପାଉ ଏହାର ସରଳ ଆଲୋଚନା ।

୧୦ ରୁ ୧୮ । ପର୍ବ ପର୍ବାଣୀ

ଦୋଳ, ଦଶହରା, ଗଣେଶ ପୂଜା, ଦିଆଲି, ଇଦ, ଖ୍ରୀଷ୍ଟମାସ, ନୂଆଖାଇ, ମକର, ପୁଷ ପୁନେଇ, ରଜ, ଗୁଣ୍ଡିଚା ଓ ଅନ୍ୟ କେତେକ ସ୍ଥାନୀୟ ପର୍ବ । ପର୍ବ ଗୁଡ଼ିକରେ କ'ଣ ସବୁ ହୁଏ ।

ଜାନୁଆରୀ ୪ ସପ୍ତାହ — ୨୪ ପାଠ

୧ ରୁ ୧୨ । ପବନ ଅଛି ବୋଲି କିପରି ଜଣାଯାଏ ? ( କୁଟା, ପତ୍ର, ଗୁଣ୍ଡ, ଧୂଳି, ଡାଳ, ଆଦି । ପବନଦ୍ୱାରା ସ୍ଥାନାନ୍ତର ହୁଅନ୍ତି । ଏହାର ପର୍ଯ୍ୟବେକ୍ଷଣ । ତରଳ ଓ କଠିନ ଜିନିଷର ଧାରଣା ( ମାଟି, ପଥର, କାଠ, ଗୋଡ଼, ପାଣି, କିରାସିନି ଆଦି ବିଭିନ୍ନ ତେଲ ସଂପର୍କରେ ଧାରଣା ) ତରଳ ପଦାର୍ଥର ଆକାର ନାହିଁ । ତରଳ ପଦାର୍ଥ ଯେଉଁ ଧରଣର ପାତ୍ରରେ ରଖାଯାଏ, ତାହା ସେହି ଆକାର ଧାରଣ କରେ । ଧୂଆଁ ଉପରକୁ ଉଠେ ଏହାର ପର୍ଯ୍ୟବେକ୍ଷଣ । ବିଭିନ୍ନ ରଙ୍ଗର ମେଘ ଆକାଶରେ ଭାସନ୍ତି । ପର୍ଯ୍ୟବେକ୍ଷଣ ।

୧୩ ରୁ ୨୪ । ବିଭିନ୍ନ ଗୃହ ପାଳିତ ପଶୁଙ୍କ ଠାରୁ ଉପକାର । ଏହି ପଶୁମାନଙ୍କ ମଧ୍ୟରୁ ଛୋଟ ପଶୁ ଓ ବଡ଼ ପଶୁ ଚିହ୍ନଟ କରିବା । ଗୃହପାଳିତ ପଶୁମାନଙ୍କର କାର୍ଯ୍ୟ ।

ଦ୍ୱିତୀୟ ପରୀକ୍ଷା

ଫେବୃଆରୀ ମାସ ୪ ସପ୍ତାହ — ୨୪ ପାଠ

୧ ରୁ ୧୨ । ପାଣି ଆପେ ଆପେ ବାଷ୍ପ ହୋଇ ଉପରକୁ ଉଠେ ।

( ଶୀତଦିନେ ସକାଳେ ଗାଢୁଆ, ଚୋଖସ୍ତର ପର୍ଯ୍ୟବେକ୍ଷଣ )

ଶୀତସକାଳର କୁହୁଡ଼ି ସଂପର୍କରେ ଆଲୋଚନା । ଶୀତଦିନେ ଘାସ ଉପରେ କାକର ବିନ୍ଦୁର ପର୍ଯ୍ୟବେକ୍ଷଣ । ବିଭିନ୍ନ ଫୁଲର ପର୍ଯ୍ୟବେକ୍ଷଣ । (ଆକାର, ରଙ୍ଗ, ଗନ୍ଧ, ଆଦି) ଫୁଲ ଆମର କି କାମରେ ଲାଗେ ।

୧୩ ରୁ ୨୪ । ଜୀବମାନଙ୍କ ପ୍ରକୃତଦସ୍ଥା ଓ ସେମାନଙ୍କର ଯତ୍ନ । ଆମଘର (ବସ୍ତି, ପକ୍କା, ଟିଣ, ଟାଇଲଆଦି) ଘର କାହିଁକି ଦରକାର । (ଖରା, ବର୍ଷା, ଶୀତ, ପବନ ଓ ହିଂସ୍ରଜନ୍ତୁମାନଙ୍କ ଦାଉରୁ ରକ୍ଷା ପାଇବା ପାଇଁ)

## ମାର୍ଚ୍ଚ ୩ ସପ୍ତାହ — ୧୮ ପାଠ

୧ ରୁ ୯ । ପୃଥିବୀ ଉପରେ ଆମେ କଅଣ ସବୁ କରୁ । (ଖାସପକୁଆ, ପଶୁପାଳିବା; ଫସଲ; ବୃକ୍ଷରୋପଣ, କୂଅ, ପୋଖରୀ ଖୋଳିବା, ଦେଉଳ ତୋଳିବା, ପୋଲଗଢିବା ଆଦି କାର୍ଯ୍ୟର ଧାରଣା) ଆମେ ପୃଥିବୀରୁ ପାଉଥିବା ସାହାଯ୍ୟ ।

୧୦ ରୁ ୧୮ । ସ୍ଥାୟୀ ଓ ଅସ୍ଥାୟୀ ଘରର ଧାରଣା । ଘର ତିଆରି ପାଇଁ ଆବଶ୍ୟକ ହେଉଥିବା ଉପକରଣ ମାନ । (କାଠ, ବାଉଁଶ, ତୃଣ, ମାଟି, ଇଟା, ପଥର, ଝାଟି, ବାଲି, କଂକ୍ରିଟ, ଲୁହାଛଡ଼, ସିମେଣ୍ଟ ଆଦି) ।

## ଅପ୍ରେଲ ମାସ ୪ ସପ୍ତାହ — ୨୪ ପାଠ

୧ ରୁ ୧୨ । ପୃଥିବୀ ଉପରେ ଆମେ କୂଅ ପୋଖରୀ ଖୋଳୁ ।

ଆମର ଖାଦ୍ୟ:—

ଘୋଡ଼ୁଆ ହୋଇନଥିବା ଖାଦ୍ୟ ବା ବାସି ଖାଦ୍ୟ ଖାଇବାରେ କ୍ଷତି ହୁଏ ।

ପରିଷ୍କାର ପାଣି ପିଇବା । (ପାଣି ବିଶୁଦ୍ଧତା ସଂପର୍କରେ ଧାରଣା ) ।

୧୩ ରୁ ୨୪ । ଘରଟିଏ ତିଆରି କରିବାରେ ଆମକୁ କେଉଁମାନେ ସାହାଯ୍ୟ କରନ୍ତି । (ବଢେଇ, କମାର, ମିସ୍ତ୍ରୀ, ମୂଲିଆ ଆଦି ) ଘରଟିକୁ କିପରି ସୁନ୍ଦର କରି ସଜାଇବ । ଆମେ ଆଲୁଅ ପାଉ କେଉଁଠୁ ? ଆମ ପିନ୍ଧା ଲୁଗାପଟା ।

## ମଇ ମାସ ୨ ସପ୍ତାହ ୧୨ ପାଠ

୧ ରୁ ୧୨ । ସ୍କୁଲରେ ଯିବାର ନିୟମମାନ । ଆମ ବିଦ୍ୟାଳୟ, ସ୍କୁଲଘଣ୍ଟା, ସ୍କୁଲଘର, ବଗିଚା, ପିଇବା ପାଣି, ମୁତୀ ଓ ପାଇଖାନା ଆଦି ବିଷୟରେ କଥୋପକଥନ ଓ ଧାରଣା ସୃଷ୍ଟି । ସ୍କୁଲର ଶିକ୍ଷକମାନଙ୍କ ନାମ । ସ୍କୁଲ ଗୃହରେ ଥିବା କକ୍ଷ ଗୃହକର ସଂଖ୍ୟା ।

ବାର୍ଷିକ ପରୀକ୍ଷା

ସୂଚନା:—ନୂତନ ସିଲାବସରେ ସାମାଜିକ ପାଠ ଓ ସାଧାରଣ ବିଜ୍ଞାନକୁ ଏକତ୍ର ଶିକ୍ଷା ଦିଆଯିବାର ବ୍ୟବସ୍ଥା କରାଯାଇଛି । ଏଥିରେ ଅନେକ କଠିନ ବିଷୟର ଅବତାରଣା କରାଯାଇଛି । ସ୍କିମ ଅନ୍ତର୍ଗତ କେତେକ ପାଠକୁ କଥୋପକଥନ ଓ ଗଳ୍ପକଥନ ମାଧ୍ୟମରେ ଶିକ୍ଷାଦେବା ପାଇଁ ଶିକ୍ଷକମାନେ ଚେଷ୍ଟିତ ହେବାକୁ ଅନୁରୋଧ । ପୂର୍ବରୁ ପ୍ରସ୍ତୁତ ହେଲେ ଶିକ୍ଷାଦାନ ସୁଗମ, ସରସ ଓ ପ୍ରାଣବନ୍ତ ହୋଇ ପାରିବ ।



# ଶ୍ରେଣୀ — ପ୍ରଥମ

ବିଷୟ — 'ଚିତ୍ରାଙ୍କନ ଓ ହସ୍ତକର୍ମ' - ସପ୍ତାହକୁ ୨ଟି ପିରିୟଡ୍

## ଚିତ୍ରାଙ୍କନ

ସପ୍ତାହରେ ଗୋଟିଏ ପିରିୟଡ୍ ।

### ଜୁନ୍ ୧ ସପ୍ତାହ — ୧ ପାଠ

୧ । ଧଳା ଓ କଳା ରଙ୍ଗର ଧାରଣା ।

ବିଭିନ୍ନ ପଦାର୍ଥ ମାଧ୍ୟମରେ ଧାରଣା ଦିଆଯିବ ।

### ଜୁଲାଇ ୪ ସପ୍ତାହ — ୪ ପାଠ

୧ । ନାଲି ଓ ହଳଦିଆ ରଙ୍ଗର ଧାରଣା ।

୨ । ନାଇଗଣି ଓ ସବୁଜ ରଙ୍ଗର ଧାରଣା ।

୩ । ସରଳ ରେଖାର ଚିତ୍ର ।

୪ । ବକ୍ର ରେଖାର ଚିତ୍ର ।

### ଅଗଷ୍ଟ ୪ ସପ୍ତାହ — ୪ ପାଠ

୧ । ଅଧା ସୂର୍ଯ୍ୟଙ୍କ ଚିତ୍ର ।

୨ । ଧନୁର ଚିତ୍ର ।

୩ । ଗୋଟିଏ ସରଳ ରେଖାକୁ ଯୋଡ଼ି ଗୋଟିଏ କ୍ଷେତ୍ର ପ୍ରସ୍ତୁତ କରିବା ।

୪। ଗୋଟିଏ ପତାକାର ଚିତ୍ର ।

ସୂଚନା- ସ୍ଲେଟ୍; ଚକ ବା କଳାପଟାରେ ସମତଳ ଚଟାଣ ଉପରେ ଚକ୍ ସାହାଯ୍ୟରେ ଚିତ୍ର ଅଙ୍କା ଯିବ ।

ସେପ୍ଟେମ୍ବର ୪ ସପ୍ତାହ — ୪ ପାଠ

୧। କାକୁଡ଼ିର ଚିତ୍ର ଅଙ୍କନ ।

୨। ପୂର୍ଣ୍ଣ ସୂର୍ଯ୍ୟର ଚିତ୍ର ।

୩। ପୋଷ୍ଟ କାର୍ଡର ଚିତ୍ର ।

୪। ପ୍ରଥମ ପରୀକ୍ଷା ଗ୍ରହଣ ।

ଅକ୍ଟୋବର ୩ ସପ୍ତାହ — ୩ ପାଠ

୧। ସ୍କେଲର ଚିତ୍ର ।

୨। ଶଗଡ଼ ଚକର ଚିତ୍ର ।

୩। କଇଁଅର ଫୁଲ୍ ଚିତ୍ର ।

ନଭେମ୍ବର ୪ ସପ୍ତାହ — ୪ ପାଠ

୧। ଗ୍ଲାସର ଚିତ୍ର ।

୨। ଭେଣ୍ଡିର ଚିତ୍ର ।

୩। ସୁନ୍ଦର ଅକ୍ଷର ।

୪। ପୁନରାଲୋଚନା

ଡ଼ିସେମ୍ବର ୩ ସପ୍ତାହ ୩ — ପାଠ

୧। ସ୍ଲେଟର ଚିତ୍ର ।

୨। ଘରର ଚିତ୍ର ।

୩। ମନଇଚ୍ଛା ମାଛର ଚିତ୍ର ।

ଜାନୁଆରୀ ୪ ସପ୍ତାହ — ୪ ପାଠ

୧। ସୁନ୍ଦର ଅକ୍ଷର ଲେଖିବା ।

୨। ଆମ୍ବର ଚିତ୍ର ।

୩। ଝରକାର ଚିତ୍ର ।

୪। ୨ୟ ପରୀକ୍ଷା

## ଫେବୃଆରୀ ମାସ ୪ ସପ୍ତାହ — ୪ ପାଠ

୧ । ଅମୃତ ଭଣ୍ଡାର ଚିତ୍ର ।
୨ । ଅମୃତ ଭଣ୍ଡାରେ ରଙ୍ଗ ଦେବା ।
୩ । ଓ୍ଵଙ୍କାର ଚିତ୍ର ।
୪ । ଆମ୍ବ ପତ୍ରର ଚିତ୍ର ।

## ମାର୍ଚ୍ଚ ୩ ସପ୍ତାହ — ୩ ପାଠ

୧ । ବରପତ୍ରର ଚିତ୍ର ।
୨ । ଖାନର ଚିତ୍ର ।
୩ । ଦୁଆରର ଚିତ୍ର ।

ସୂଚନା:- ଚିତ୍ର ପାଇଁ ଶିକ୍ଷକ ଛାତ୍ର ଛାତ୍ରୀମାନଙ୍କୁ ସାହାଯ୍ୟ କରିବେ ।

## ଅପ୍ରେଲ ୪ ସପ୍ତାହ ୪ ପାଠ

୧ । ଶଙ୍ଖର ଚିତ୍ର ।
୨ । ସିନ୍ଦୁର ଚିତ୍ର ।
୩ । ଗଛର ଚିତ୍ର ।
୪ । ପୁନରାବୃତ୍ତି ।

## ମଇ ୨ ସପ୍ତାହ — ୨ ପାଠ

ପୁନରାବୃତ୍ତି ଓ ବାର୍ଷିକ ପରୀକ୍ଷା ।



## ହସ୍ତ କର୍ମ

ସୂଚନା:- ସପ୍ତାହକୁ ଗୋଟିଏ ପିରିୟଡ଼ ।

### ଜୁନ୍ ୨ ସପ୍ତାହ — ୨ ପାଠ

୧ ଓ ୨ । ମାଟି ସଂଗ୍ରହ କରିବା ।

### ଜୁଲାଇ ୪ ସପ୍ତାହ — ୪ ପାଠ

୧ । ମାଟିରୁ ଅଳିଆ ସଫା କରିବା ।
୨ । ମାଟି ଚକଟି ଗୋଲ କରିବା ।
୨ । ଗୋଲକୁ ରଙ୍ଗ ଦେବା ।
୪ । ଗୋଲକୁ ମାଳ କରିବା ।

### ଅଗଷ୍ଟ ୪ ସପ୍ତାହ — ୪ ପାଠ

୧ । ଘର ତିଆରି କରିବା ।
୨ । କାଗଜରେ ଡଙ୍ଗା କରିବା ।
୩ । ମାଟିର ଘର ।
୪ । ମାଟିର ବେଲ ।

### ସେପ୍‌ଟେମ୍ବର ୪ ସପ୍ତାହ — ୪ ପାଠ

୧ । ମାଟିର କାକୁଡ଼ି ।
୨ । କାଗଜରେ ଦନ୍ତ ଓ ରନ୍ଧ ।
୩ । ମାଟିର ଚକ ।
୪ । କାକୁଡ଼ିରେ ରଙ୍ଗ ଦେବା ।

୧ମ ପରୀକ୍ଷା ।

### ଅକ୍ଟୋବର ୩ ସପ୍ତାହ — ୩ ପାଠ

୧ । ଖାଳର ଦଉଡ଼ି ବଳିବା ପାଇଁ ଖାଳ ସଗ୍ରହ ।
୨ । ମାଟିର କଦଳୀ ।
୩ । ପାଳରେ ଦଉଡ଼ି ବଳା ।

## ନଭେମ୍ବର ୪ ସପ୍ତାହ — ୪ ପାଠ

୧ । ମାଟିରେ ପିଜୁଳି ।
୨ । ପିଜୁଳିରେ ରଙ୍ଗ ଦେବା ।
୩ । ଗିଲାସ ।
୪ । ଗିଲାସରେ ରଙ୍ଗ ଦେବା ।

## ଡିସେମ୍ବର ୩ ସପ୍ତାହ — ୩ ପାଠ

୧ । ବାଉଁଶ ସଂଗ୍ରହ ।
୨ । ଆଖୁ ଫୁଲ ସର ସଂଗ୍ରହ ।
୩ । ବାଉଁଶରେ କାଠି ତିଆରି କରିବା ।

## ଜାନୁଆରୀ ୪ ସପ୍ତାହ — ୪ ପାଠ

୧ । ବାଉଁଶ କାଠିରେ ନାଲି ରଙ୍ଗ ଦେବା ।
୨ । ,, ,, ନେଳ ରଙ୍ଗ ଦେବା ।
୩ । ,, ,, ହଳଦି ରଙ୍ଗ ଦେବା ।
୪ । ୨ୟ ପରୀକ୍ଷା ଗ୍ରହଣ ।

## ଫେବୃଆରୀ ୪ ସପ୍ତାହ — ୪ ପାଠ

୧ । ୧୦ ଖଣ୍ଡ କାଠିରେ ବଣ୍ଡା କରିବା ।
୨ । କାଗଜ ସଂଗ୍ରହ ।
୩ । କାଗଜ କାଟିବା ।
୪ । କାଗଜର ଦୁଇ ମୁଣ୍ଡକୁ ଅଠାରେ ଯୋଡ଼ିବା ।

## ମାର୍ଚ୍ଚ ୩ ସପ୍ତାହ — ୩ ପାଠ

୧ । ମାଟିର ବାଇଗଣ ।
୨ । ବାଇଗଣରେ ରଙ୍ଗ ଦେବା ।
୩ । କାଗଜ ଠଙ୍ଗା ଗଢ଼ି ଶିଖିବା ।

### ଅପ୍ରେଲ ୪ ସପ୍ତାହ — ୪ପାଠ

୨ । ମାଟିର କଖାରୁ ।
୨ । କଖାରୁରେ ରଙ୍ଗ ଦେବା ।
୩ । ଅମୃତଭଣ୍ଡା ତିଆରି ।
୪ । ଅମୃତଭଣ୍ଡାରେ ରଙ୍ଗ ଦେବା ।

### ମଇ ୨ ସପ୍ତାହ — ୨ ପାଠ

ବାର୍ଷିକ ପରୀକ୍ଷା ।



## ଶାରୀରିକ ଶିକ୍ଷା ଓ ଆସନ

### ସାପ୍ତାହିକ ୧+୧=୨ ପିରିଅଡ୍

### ଜୁନ ୧ ସପ୍ତାହ — ୨ ପା.ଠ

୧ । ଦୌଡ଼ିବା
୨ । ଲଡ଼ାଜାହାଜ ପରି ଉଠିବା ( ଅନୁକରଣ )

### ଜୁଲାଇ ୪ ସପ୍ତାହ — ୮ ପାଠ

୧ । ବୁଢ଼ା ମଣିଷପରି ଚାଲିବା
୨ । ଅଣ୍ଟାଠାରୁ ତଳକୁ ନୁଆଁଇ ଚାଲିବା
୩ । ନଇଁ ନଇଁ ତଳକୁ କଣ୍ଢ ଘୋଷାଇବା ପରି ଚାଲିବା
୪ । ଦୁଇହାତ ଉପରକୁ ପ୍ରସାରିତ କରି ଚାଲିବା

### ଅଗଷ୍ଟ ୪ ସପ୍ତାହ — ୮ ପାଠ

୧ । ଶ୍ରେଣୀଭିତରୁ ଧାଡ଼ି ବାନ୍ଧି ପଡ଼ିଆକୁ ଆସିବା
୨ । ପଡ଼ିଆରୁ ଧାଡ଼ି ବାନ୍ଧି ଶ୍ରେଣୀକୁ ଯିବା
୩ । ଲମ୍ଫାଡ଼ିଆ
୪ । ମୂଷା ବିରାଡ଼ି ଖେଳ

## ସେପ୍‌ଟେମ୍ବର ୪ ସପ୍ତାହ — ୮ ପାଠ

୧ । ସଙ୍କେତ ପାଇ ଠିଆହେବା ଓ ବସିବା
୨ । ଗୋଟିଏ ଗୋଡରେ ଡେଇଁ ଡେଇଁ ଯିବା
୩ । ଶିକ୍ଷକଙ୍କୁ ଅନୁକରଣ । ( ଶିକ୍ଷକ ଯିପରି ସିପରି ଚାଲିବା )
୪ । ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସ୍ଥାନରେ ପହଞ୍ଚିବା ପାଇଁ ଦୌଡ ।
୧ମ ପରୀକ୍ଷା ଗ୍ରହଣ ।

## ଅକ୍ଟୋବର ୩ ସପ୍ତାହ — ୬ ପାଠ

୧ । ଠେକୁଆପରି ଡେଇଁବା ( ଦୁଇବୁଢା ଆଙ୍ଗୁଠିକୁ ମୁଣ୍ଡର ଦୁଇ ପାଖରେ ଠେକୁଆ କାନପରି ରଖି )
୨ । କଇଁଛ ପରି ଚାଲିବା
୩ । ବେଙ୍ଗ ଡିଆଁ

## ନଭେମ୍ବର ୪ ସପ୍ତାହ — ୮ ପାଠ

୧ । ଘୋଡ଼ା ପରି କଦମ୍ ପକାଇବ
୨ । ପର୍ବତପରି ଉଚ୍ଚ ହେବାକୁ ଚେଷ୍ଟା
୩ । ମୂଷାପରି ଛୋଟ ହେବାକୁ ଚେଷ୍ଟା
୪ । ଗଛରୁ ଫଳ ତୋଳିବା ପାଇଁ ଟେକାମାରିବାର ଅଭିନୟ

## ଡିସେମ୍ବର ୩ ସପ୍ତାହ — ୬ ପାଠ

୧ । ଫୁଲ ତୋଳିବାର ଅଭିନୟ (କାଳ୍ପନିକ)
୨ । ମାଙ୍କଡପରି ଡେଇଁବା
୩ । ଗୀତବୋଲି ତାଳଦେଇ ଚାଲିବା

## ଜାନୁଆରୀ ୪ ସପ୍ତାହ — ୮ ପାଠ

୧ । କୁକୁଡ଼ାଛୁଆ ପାଣିପିଇବାର ଅଭିନୟ
୨ । ହାତକୁ ତଳ ଉପର କରି ପାରା ଉଡ଼ିବାର ଅଭିନୟ
୩ । କୁଣ୍ଡଳୀର ଖେଳ
୪ । ୨ୟ ପରୀକ୍ଷା ।

## ଫେବୃଆରୀ ୪ ସପ୍ତାହ — ୮ ପାଠ

୧ । ଗୋରୁ ପୁଲିସ୍
୨ । ବାଘ ଛେଳି

୩ । ଅନ୍ଧ ପୁଟୁଳି

୪ । ଧାଡ଼ ବନା ଓ, ସାବଧାନ

## ମାର୍ଚ୍ଚ ୩ ସପ୍ତାହ – ୭ ପାଠ

୧ । ଜହ୍ନଉଆଁ

୨ । ବିଶ୍ରାମ, ଆରାମ୍‌ସେ

୩ । ଧୋବାଲୁଗା କାଚିବାର ଅଭିନୟ

## ଅପ୍ରେଲ ମାସ ୪ ସପ୍ତାହ — ୮ ପାଠ

୧ । ଧାଡ଼ିରେ ଠିଆ ହୋଇ ତାଳି ମାରିବା ।

୨ । ଲୁଚକାଳି ।

୩ । ଦୁଇହାତ ଦୁଇ ଆଡ଼କୁ ପ୍ରସାରିତ କରି ଗୋଟିଏ ପାଦରେ ଠିଆ ହେବା ଓ ପାଦ ବଦଳାଇବା ।

୪ । ସେହି ସ୍ଥିତିରେ ଠିଆ ହୋଇ ହାତକୁ ଉପର ତଳ କରିବା ।

## ମଇ ମାସ ୨ ସପ୍ତାହ ୪ ପାଠ

୧ । ରୁମାଲ୍ ଚୋର ।

୨ । ମୁଣ୍ଡରେ ଦୁଇହାତ ଥୋଇ ଆଗକୁ ଓ ପଛକୁ ଚାଲିବା ।

ସିଲବସ ଲକ୍ଷ୍ୟ, ଶରୀର-ଶିକ୍ଷା (Physical Educatuin) କୁ ସ୍କିମ୍‌ରେ ଯଥାସମ୍ଭବ ସ୍ଥାନ ଦିଆଯାଇଛି । ଏତଦ୍‌ବ୍ୟତୀତ ସ୍ଥାନୀୟ ଖେଳ ଗୁଡ଼ିକ ପିଲାମାନଙ୍କୁ ଖେଳାଇବାକୁ ହେବ । ବିଭିନ୍ନ ଅଞ୍ଚଳରେ ବିଭିନ୍ନ ଖେଳ ପ୍ରଚଳିତ ଥିବାରୁ ସେ ସବୁକୁ ସ୍ଥାନ ନଦେଇ କେବଳ ସାଧାରଣ କେତେକ ଖେଳକୁ ସ୍କିମ୍‌ରେ ସ୍ଥାନଦେଇ ଅନ୍ୟଗୁଡ଼ିକ ଶିକ୍ଷକଙ୍କ ଦାୟିତ୍ୱରେ ଛାଡ଼ି ଦିଆଯାଇଛି ।



# ଆସନ ଶିକ୍ଷା

ଏହି ଶ୍ରେଣୀରେ ୧୦ ଗୋଟି ଆସନ ଶିକ୍ଷା ଦେବା ପାଇଁ ସିଲାବସରେ ବ୍ୟବସ୍ଥା କରାଯାଇଛି । ଏହି ଶ୍ରେଣୀର ପିଲାମାନେ ଆସନ ପରି କଠିନ ପ୍ରକ୍ରିୟାକୁ ଅଭ୍ୟାସ କରି ପାରିବେ ନାହିଁ । ତଥାପି ଖେଳ ହିସାବରେ ପିଲାମାନଙ୍କୁ ଆସନର ପ୍ରାଥମିକ ଧାରଣା ଦେବା ସିଲାବସ କର୍ତ୍ତାଙ୍କର ଉଦ୍ଦେଶ୍ୟ ବୋଲି ଅନୁମିତ ହୁଏ । ମାସକୁ ଗୋଟିଏ ହିସାବରେ ଆସନ ଶିକ୍ଷା ଦେବା ପାଇଁ ବ୍ୟବସ୍ଥା କରାଗଲେ ବର୍ଷଶେଷକୁ ସିଲାବସ ନିର୍ଦ୍ଦିଷ୍ଟ ୧୦ ଗୋଟି ଆସନ ପିଲାମାନେ ଅଭ୍ୟାସ କରିବା କଷ୍ଟକର ହେବ ନାହିଁ ।

ସବୁ ଶିକ୍ଷକଙ୍କର ଆସନ ସମ୍ପର୍କରେ ଧାରଣା ନଥାଇ ପାରେ । ସେଥିପାଇଁ 'ଆସନ ଶିକ୍ଷା' ପୁସ୍ତକର ସହାୟତାରେ ଶିକ୍ଷକ ଶିକ୍ଷା ଦେବା ପାଇଁ ପରାମର୍ଶ ଦେଉଛୁ । ପିଲା ଦିନରୁ ଅଭ୍ୟାସ ଆରମ୍ଭ ହେଲେ ବଡ ଦିନକୁ ତାହା ସହଜ ସାଧ୍ୟ ହେବ । ଆସନ ଏକ ଉପାଦେୟ ଅଭ୍ୟାସ । ବହୁ ଦୁରାରୋଗ୍ୟ ବ୍ୟାଧି ଆସନ ଅଭ୍ୟାସ ଦ୍ୱାରା ବିନା ଚିକିତ୍ସାରେ ଉପଶମ ହୋଇଥାଏ । ପୂର୍ବକାଳର ମୁନିଋଷିମାନେ ଆସନ ଓ ପ୍ରାଣାୟାମ ବଳରେ ନିରୋଗ ଓ ଦୀର୍ଘ ଜୀବନ ଲାଭ କରୁଥିଲେ । ଶିକ୍ଷାନୁଷ୍ଠାନ ମାନଙ୍କରେ ଆସନର ପ୍ରଚଳନ ଓ ଏହାର ଯଥାର୍ଥ କାର୍ଯ୍ୟକାରିତା ପ୍ରତି ଦୃଷ୍ଟି ଦେଲେ ଆମ ସମାଜର ମହୋପକାର ସାଧିତ ହେବ ।

**ଆସନମାନ:—** ସିଦ୍ଧାସନ, ପଦ୍ମାସନ, ପଶ୍ଚିମୋତ୍ତାସନ, ବଦ୍ଧପଦ୍ମାସନ, ଉପବିଷ୍ଟପାଦ ପ୍ରସାରଣ, ଦ୍ୱିପାଦ-ଗ୍ରୀବାସନ, କ୍ରୌଞ୍ଚ ଆସନ, ବଦ୍ଧହସ୍ତ ପଶ୍ଚିମୋତ୍ତାସନ; ଦ୍ୱିହସ୍ତପ୍ରସାରଣ ଆସନ, ପାଦ-ଗ୍ରୀବାସନ ।



# ଶ୍ରେଣୀ—ପ୍ରଥମ

ବିଷୟ— 'ମାତୃଭାଷା' - ସପ୍ତାହରେ ୬ ପିରିୟଡ଼ ।

ସୂଚନା:— ପିଲାମାନଙ୍କୁ ଅକ୍ଷର ଶିକ୍ଷା ଦେବା ଭଳି ଆୟାସସାଧ୍ୟ ତାହା ଅନୁଭବୀ ଶିକ୍ଷକମାନଙ୍କ ବ୍ୟତୀତ ଅନ୍ୟ କେହି ଉପଲବ୍ଧି କରିବା ସହଜ ନୁହେଁ ।

ପ୍ରଥମ ଶ୍ରେଣୀର ପ୍ରତ୍ୟେକ ପାଠଦାନ, ଗଳ୍ପ କଥୋପକଥନ ଓ କ୍ରୀଡ଼ା ଛଳରେ କରାଯିବା ବାଞ୍ଛନୀୟ । ମାଟିରେ ବିଭିନ୍ନ ପ୍ରକାରର ସଳଖ, ବଙ୍କା, ଟେରେଗ୍ରା ଗାର୍ମାନ ଟାଣି ଶିଶୁକୁ କ୍ରୀଡ଼ା ଛଳରେ ଅକ୍ଷର ଶିକ୍ଷାଦାନର ପ୍ରାରମ୍ଭିକ ଧାରଣା ଦିଆଯିବ । ଶିକ୍ଷକ ମହାଶୟ ଶିଶୁମନୋବିଜ୍ଞାନ ପ୍ରତି ଲକ୍ଷ୍ୟ ରଖି ଶିକ୍ଷାଦାନର ରୀତି ପରିବର୍ତ୍ତନ କରିବାକୁ ଭୁଲିବେ ନାହିଁ । ଏକ ପ୍ରକାର ଗତାନୁଗତିକ ପ୍ରଣାଳୀ ଶିଶୁର ଉତ୍ସାହ ସୃଷ୍ଟିରେ ଅନ୍ତରାୟ ହୋଇଥାଏ ।

ଅକ୍ଷର ପରିଚୟ ପରେ ଶବ୍ଦ ଲଖନ, ଖଣ୍ଡ ବାକ୍ୟ, ଛୋଟ ଛୋଟ ବାକ୍ୟ ଗଢ଼ି ଶିଖିବା, ଶୂନ୍ୟସ୍ଥାନ ପୂରଣ, ଅକ୍ଷର କାର୍ଡ, ଫ୍ଲାସ କାର୍ଡ ବ୍ୟବହାର କରି ବାକ୍ୟ ଗଠନ କରାଇବେ ।

ଉଦାହରଣ:— (୧) କଳାପଟା ବା ବାଲିରେ ଲେଖନ୍ତୁ । ଝ —, ଗ —
ଖାଲି ଜାଗା ପୂରଣ କରିବାକୁ କହିବେ ।
(୨) ତାସ୍‌ଖେଳ ମାଧ୍ୟମରେ, କାର୍ଡ ଯୋଡ଼ି ଶବ୍ଦ ଗଠନ ।
(୩) ଗୋଲି, ମଞ୍ଜି ଯୋଡ଼ି ଅକ୍ଷର ତିଆରି କରି ଶବ୍ଦ ଲେଖିବେ ।

ଶିକ୍ଷକ ମାତୃଭାଷା ଶିକ୍ଷାଦାନ ପାଇଁ ଅଧିକ ଧ୍ୟାନ ଦେବେ ।

## ଜୁନ୍ ୧ ସପ୍ତାହ — ୬ ପାଠ

୧ । ନୂତନ ଛାତ୍ର ଗ୍ରହଣ । ଛାତ୍ର ଛାତ୍ରୀ ମାନଙ୍କ ସହିତ ଶିକ୍ଷକଙ୍କର ପରିଚୟ ଓ କଥୋପକଥନ ।

୨ । ସ୍ଲେଟରେ ବିଭିନ୍ନ ସରଳ ଓ ବକ୍ର ରେଖା; ବାଡ଼, ଟୋପି, ଗିନା ଆଦିର ଚିହ୍ନ ।
ଯଥା:- । ⁄ — ᑌ ⌒ ୦ ଇତ୍ୟାଦିର ଅଙ୍କନ । ବିଭିନ୍ନ ପାଠର ଅଭ୍ୟାସ ।

୩ । ଛବି ବହିର ପ୍ରଥମ ପାଠର କଥୋପକଥନ, ପୂର୍ବ ପାଠର ଅଭ୍ୟାସ ।

୪ । ପୂର୍ବ ପରିଚିତ ଚିତ୍ର ମାନଙ୍କର ରେଖା ଚିତ୍ର ଅଙ୍କନ, ପୂର୍ବ ଟୋପି ଗିନା ଆଦିର ଅଙ୍କନ । ଶଗଡ଼ ବିଷୟରେ କଥୋପକଥନ, ଶଗଡ଼ର ' ଚକ ' ବିଷୟରେ ପୂର୍ଣ୍ଣ ଧାରଣା ପ୍ରଦାନ ।

୫ । ଚକର ଚିତ୍ର ସହିତ ପୂର୍ଣ୍ଣ ପରିଚୟ ହେବା ପରେ କାଲି ବା ଚିତ୍ରୁଳ ମଞ୍ଜି କୁ ଯୋଡ଼ି ଚକର ଚିତ୍ର ଅଙ୍କନ ।

୬ । ସ୍ଲେଟ୍‌ରେ ଚକର ପୂର୍ଣ୍ଣ ଚିତ୍ର ଅଙ୍କିବା, "କ" ସହିତ ପରିଚିତ କରାଇବା, "ଚ" ଓ "କ"ର ପରିଚୟ ଓ ପୂର୍ଣ୍ଣ ଧାରଣା ।

## ଜୁଲାଇ ୪ ସପ୍ତାହ — ୨୪ ପାଠ

୧ । ଚକ ର ପଠନ ଓ ଲିଖନ

୨ । ଚକ ବିଷୟରେ ଗଳ୍ପ

୩ । କଳ ବିଷୟରେ ଗଳ୍ପ ।

୪ । କ ଓ ଳ ର ମିଶ୍ରଣରେ କଳର ଧାରଣା ।

୫ । କ ଓ ଳ ର ମିଶ୍ରଣରେ କଳର ଧାରଣା ।

୬ । କ ଳ ବିଷୟରେ କଥୋପକଥନ ।

୭ । କଳ ର ପଠନ ଓ ଲିଖନ ।

୮ । ଚ; କ . ଳ ଅକ୍ଷର ଗୁଡ଼ିକର ବିଶ୍ଳେଷଣ ।

୯ । ଚକ, କଚ, ଚଳ, କଳ — ପଠନ ଲିଖନ

୧୦ । ନଳ ବିଷୟରେ ଗଳ୍ପ ଓ ନଳର ଚିତ୍ର, 'ନଳ'ର ପଠନ ଓ ଲିଖନ

୧୧ । କନ, କନକର ପଠନ, ଲିଖନ

୧୨ । ନଖ ବିଷୟରେ ଗଳ୍ପ "ଖ" ଅକ୍ଷର ଶିକ୍ଷା ନଖ, ଖଳ, ଖଚ ଚିତ୍ର ବିଷୟର ଦ୍ୱିତୀୟ ଓ ତୃତୀୟ ପୃଷ୍ଠା ପଠନ ଓ ଲିଖନ

୧୩ । ଅଖ, ଖଣ୍ଟ ର ଚିତ୍ର ସହିତ ପରିଚିତ କରାଇବା । ଅ, ଟ ନୂତନ ଅକ୍ଷର ସହିତ ବିଭିନ୍ନ ରଙ୍ଗ ଚକ୍ ଖଡ଼ିରେ ଲେଖି ପରିଚିତ କରାଇବା ।

୧୪ । ଓଟ, ଓଜ଼ ର ପଠନ ଓ ଲିଖନ ।

୧୫ । ଜ଼, ଓର ପ୍ରଭେଦ ।

୧୬ । ଓଜ଼, କଜ଼, ଟଜ଼ ଶବ୍ଦ ଲିଖନ ।

୧୭ । କଟକ, କନକ, ଖଳ; ଓଟ- କଳାପଟାରେ ପଠନ ଓ ଲିଖନ ।

୧୮ । ଓ ର ବିଶ୍ଳେଷଣ ।

୧୯ । ଇ ଶିକ୍ଷା ପାଇଁ ଉଇ; ନଈ ବିଷୟରେ ଗଳ୍ପ ।

୨୦ । ଇ, ଈ ର ପ୍ରକାର ଭେଦ ଓ ବିଶ୍ଳେଷଣ ଅଟକ, ଉଇ, ନଈ, ଟଳଟଳ ର ପଠନ ଲିଖନ ।

୨୧ । କ, ଳ ଗ, ନ, ଚ, ଅ, ଓ, ଉ ଊ, ଆ, ଈ, ଇ ଅକ୍ଷର ମାନଙ୍କର ପରିଚୟ ଲିଖନ ପଠନ ।

୨୨ । ଜଳ, ନଳ, ଖଟ, ନଖ, ଅଖ, ନଈ, ଖଇ ଉଇ କନକ, ଅଟକ, ଆଦି ଶବ୍ଦ ଗୁଡ଼ିକର ଲିଖନ ଓ ପଠନ ।

୨୩ । ଚଟଜଳ, କନକ ଖଟ, କଳ ଅଖ ଇତ୍ୟାଦି ଶବ୍ଦ ଗୁଡ଼ିକର ଲିଖନ ଓ ପଠନ ।

୨୪ । ଛବି ବହିର ପ୍ରଥମ ପୃଷ୍ଠା ଠାରୁ ୬ଷ୍ଠ ପୃଷ୍ଠା ଯାଏ ପରିଚୟ ଶବ୍ଦ ଗୁଡ଼ିକର ପୁନରାଲୋଚନା ।

## ଅଗଷ୍ଟ ୪ ସପ୍ତାହ — ୨୪ ପାଠ

୧ । ଏକର ପରିଚୟ, ପଠନ ଲିଖନ । ଐ ର ପରିଚୟ । ଛବି ବହିର ୭ମ ପୃଷ୍ଠା ପଠନ ଲିଖନ । ଅ, ଖ, କ, ଉ, ଈ, ନ, ଟ, ଓ, ଆ; ଏ, ଐ ର ପୁନଃ ଆଲୋଚନା ।

୨ । ଟଳ ଟଳ, ନଈ କଈ, ଅଚଳ କଳ, କଟକ ଓଉ ।

୩ । ଅବଟ ଶବ୍ଦରୁ ବ'ର ପରିଚୟ ଓ ପଠନ ।

୪ । ରଖ, ଅରଟ, ଖର, ଅର ପଠନ ଓ ଲିଖନ ।

୫ । ଦଉଡ଼ ରୁ ଡ଼'ର ପରିଚୟ ପଠନ ଓ ଲିଖନ ।

୬ । କଉଡ଼ି, ଖଡ଼, ଚର ଚଉ, ରକତ ପଠନ ଓ ଲିଖନ ।

୭ । ଆତ' ରୁ ଆର ପରିଚୟ ପଠନ ଓ ଲିଖନ

୮ । ଆଡ଼, ଆଇ, ଜଆ, ଆକଟ, ଆରତ, ଆଉଡର ଆତ

୯ । ଡ଼ ଢ଼ ଅକ୍ଷର ଦୁଇଟିର ପରିଚୟ ପଠନ ଓ ଲିଖନ ଅ ଠାରୁ ଔ ପର୍ଯ୍ୟନ୍ତ ସ୍ୱର ବର୍ଣ୍ଣ ମାନଙ୍କର ପୁନରାଲୋଚନା

ଛବି ବହିର ୮ମ ଓ ୯ମ ପୃଷ୍ଠାର ପଠନ ଲିଖନ ।

୧୦ । ବତକ ଶବ୍ଦରୁ 'ବ' ଅକ୍ଷରର ପରିଚୟ

ବ, ତ, କ, ଇ ଅକ୍ଷରର ବିଶ୍ଳେଷଣରେ ବତକ, ବଳ ବନ, ବକଳ, ବଟ ବର, କରତ କଳ—ର ପଠନ ।

୧୧ । ବତକ ଓ ବଗ ବିଷୟରେ ଗଳ୍ପ ଓ କଥୋପକଥନ ।

୧୨ । ବଗରୁ 'ଗ' ଅକ୍ଷର ଶିକ୍ଷା ଓ ଲିଖନ ପଠନ । ବଗ, ନଗର, ଟଗର; କଟକ ନଗର ।

୧୩ । ଗଛ ବିଷୟରେ କଥୋପକଥନ । ଗଛରୁ ଛ ଅକ୍ଷର ଶିକ୍ଷା—ଛକ, କଛ, ବରଗଛ ଗବ ଚଛ ।

୧୪ । ରଥ ଚିତ୍ର ଦେଖାଇ ରଥର ଧାରଣା ଓ ଗଳ୍ପ, ଥ ଅକ୍ଷରର ପଠନ ଓ ଲିଖନ ପାଇଁ— ରଥ ଥର; ଥଳ ବଥ ରଥ ଥର ।

୧୫ । ଘର ଶବ୍ଦରୁ 'ଘ' ଅକ୍ଷରର ପଠନ ଘ ର ବିଶ୍ଳେଷଣରେ ଘ + ର = ଘର ଘ + ନ = ଘନ, ଘର, ଘଟ; ଘନ ଘନ, ଘର ଘର; ଘଟ ଘଟ ।

୧୬ । 'ଙ' ଅକ୍ଷରର ପରିଚୟ ।

୧୭ । କ, ଖ, ଗ; ଘ ଙ ଅକ୍ଷର ଗୁଡ଼ିକର ପୁନରାବୃତ୍ତି ପାଇଁ ଛବି ବହିର ୧୨ଶ ପୃଷ୍ଠାର ପଠନ ଓ ଲିଖନ ।

୧୮ । ଜଟ ଶବ୍ଦରୁ ଜ ଅକ୍ଷର ଶିକ୍ଷା ଓ ଝର ଶବ୍ଦରୁ 'ଝ' ଅକ୍ଷର ଶିକ୍ଷା । ଜଟ, ଜଳ, ଝର, ଶବ୍ଦର ପଠନ ଲିଖନ । ଜଳ, ଜଗତ, କଜଳ, ନଜର, ଝଲ ଅଝଟ, ଝର ଝର, କଟକ ନଗର, ନଈର ଝର ।

୧୯ । ଛବି ବହିର ୧୩ଶ ପୃଷ୍ଠାର ପଠନ ଓ ଲିଖନ । ( ଚ, ଛ, ଜ, ଝ, ଞ )

୨୦ । ଠ ଅକ୍ଷର ଶିକ୍ଷା ପାଇଁ କଠଉ ଚିତ୍ର ଦେଖାଇବା, ଢ଼ ଅକ୍ଷର ପାଇଁ ଜଢ଼ ଚିତ୍ର ଦେଖାଇ ଠ ଓ ଢ଼ ଅକ୍ଷର ଶିକ୍ଷା ଦେବା । କଠଉ, ଠକ ଠକ, ଆଠ, ଉଠ; ଜଢ଼, ଢ଼ଗ, ଢ଼ମ ନଜର, ଆଜ ଏଥର ।

୨୧ । ଡ,ଡ଼ ଅକ୍ଷର ଶିକ୍ଷା ପାଇଁ ଡର ଓ ପଇଡ଼ ଶବ୍ଦର ପଠନ । ଡେଁ, ଡଥର, ଡଗଡ଼ଗ,

୨୨ । ଟ, ଠ ଡ, ଢ଼, ଣ ଅକ୍ଷର ଗୁଡ଼ିକର ବିଶ୍ଳେଷଣ, ଣ' ଅକ୍ଷର ଶିକ୍ଷା ବଣ ବିଷୟରେ କଥୋପକଥନ ଓ ଗଳ୍ପକଥନ । ଛଣ ଅଣ, ଛପର କର, ଗଛ ନଚଡ଼, ଡେଙ୍ଗ ଝଡ଼ ର ପଠନ ଓ ଲିଖନ ।

୨୩ । ଦ, ଧ ଶିକ୍ଷା ପାଇଁ କଳଦ ଓ ଗଧ ବିଷୟରେ ଆଲୋଚନା । ଦଳ, ପଦ, କଳଦ, ଚଦର, ଔଧ, ଗଧ, ଧନ; ଧରମ, ଧପ ଧପ ।

୨୪ । ତ ଥ ଦ ଧ ନ ଅକ୍ଷର ଗୁଡ଼ିକର ପୁନରାଲୋଚନା । କଳଦ ବଦଳ ନକର ଏଥର । ଛବି ବହିର ୧୬ ୧୭ ପୃଷ୍ଠାର ପଠନ ଲିଖନ ।

## ସେପଟେମ୍ବର ୪ ସପ୍ତାହ — ୨୪ ପାଠ

୧ । ଫ ଓ ମ ଅକ୍ଷର ଶିକ୍ଷା ପାଇଁ ଫଳ ଓ ମଟର ଚିତ୍ର ବ୍ୟବହାର । ଶବ୍ଦ— ଫଳ ବରଫ, ମଠ, ମଟର, ମଗର, ଗମନ, ନରମ ।

୨ । ଭ ଅକ୍ଷର ଶିକ୍ଷା ପାଇଁ ଭବନ ଚିତ୍ର ଦେଖାଇବା ଓ ଆଲୋଚନା । ଭଜନ, ଭବନ, ଭରଣ । ( ପ ଫ ବ ଭ ମ ଅକ୍ଷର ମାନଙ୍କର ପୁନରାବୃତ୍ତି ପାଇଁ ଛବି ବହିର ୧୯ଶ ପୃଷ୍ଠା ପଠନ ) ।

୩ । ସ ଙ୍ଗ ଅକ୍ଷର ଶିକ୍ଷା ପାଇଁ ସଅ ଓ କଳସ ଚିତ୍ରର ବ୍ୟବହାର ଓ ଆଲୋଚନା । ସକଳ ପଣସ, ସଚନ; ସଚିତ୍ର ଛବି ବହିର ୨୫ ପୃଷ୍ଠା ପଠନ ଲିଖନ ।

୪ । କ ଓ ଶ ଅକ୍ଷର ଶିକ୍ଷା ପାଇଁ କଲମ ଓ ଶଗଡ଼ ଚିତ୍ରର ବ୍ୟବହାର । କଲମ, ଲମ୍ବ, ଶସ୍, ସଶ, ଶଗଡ଼ ଶବ୍ଦମାନ ପଠନ ଣ ଷ ସ ର ବିଶ୍ଳେଷଣ ।

୫ । ଯ ଷ ଅକ୍ଷର ଶିକ୍ଷା ପାଇଁ ନୟନ ଔଷଧ ବୋତଲର ଚିତ୍ର ବ୍ୟବହାର । ଅଭ୍ୟ, ଉପୂ ଅମ୍ବୃ, ବିସ୍ମୃସ୍; କଷଣ, ବଉଷ ଶବ୍ଦମାନଙ୍କର ପଠନ ଓ ଲିଖନ । ଛବି ବହିର ୨୧ ପୃଷ୍ଠା ପଠନ ଲିଖନ । ମ ୟ ର ଳ ଲ ଅକ୍ଷର ମାନଙ୍କର ଆଲୋଚନା ।

୬ । ହ ଓ ଷ ଅକ୍ଷର ଶିକ୍ଷା ପାଇଁ - ହଳ, ହସ; ମହମ, ଗହଳ; କ୍ଷ ବଷ, ଅକ୍ଷର ଆଦି ଶବ୍ଦ ମାନଙ୍କର ବହୁଳ ଆଲୋଚନା । ସ, ହ, ଷ ର ପୁନରାଲୋଚନା ।

୭ । ଅ ଠାରୁ ଷ ଯାଏଁ ଅକ୍ଷର ମାନଙ୍କର ପୁନରାଲୋଚନା ଓ ଛବି ବହିର ୨୩ଶ ପୃଷ୍ଠାର ପଠନ ଓ କେତେକ ଶବ୍ଦ ଲିଖନ ।

୮ । 'ଆ'କାର ଶିକ୍ଷା ଦେବା ଉଦ୍ଦେଶ୍ୟରେ ବିଶ୍ଳେଷଣ ମାଧ୍ୟମରେ ମାତ୍ରା ଶିକ୍ଷ ଦେବା ।

କ + ଆ ( ଆକାର ା ) = କା କା + ର = କାର

ଛ + ର = ଘର

ଷ + ା = ଷା; ଷା + ର = ଷାର

ଆକାର ଯୁକ୍ତ ବିଭିନ୍ନ ଶବ୍ଦ ପଠନ ଓ ଲିଖନ । କା, ଗା, ଖା. ଘା; ଚା, ଗ୍ଲ; ଜା; ଝା ଇତ୍ୟାଦିର ଶିକ୍ଷା ଦେବାକୁ ଯାଇ ବିଭିନ୍ନ ରଙ୍ଗ ର ଚକ୍ ବ୍ୟବହାର କରାଯିବ । ଛବି ବହିର ୨୫ଶ ପୃଷ୍ଠାର ପଠନ ଓ ଲିଖନ ।

୯ । 'ଇ' କାର ଶିକ୍ଷା । ଚ + କ = ଚକ, କ + ି = କି, ଚ + କି = ଚକି ମା + ଛ = ମାଛ, ଛ + ି = ଛି, ମା + ଛି = ମାଛି ।

କି ଖି ଗି ଘି ଚି ଛି ଜି ଝି ଇତ୍ୟାଦିର ଶିକ୍ଷା ପରେ ଖଣି ଚନି ମାଟି ପାଣି ଇତ୍ୟାଦି ଶବ୍ଦ ମାଧ୍ୟମରେ ଇକାର ଶିକ୍ଷା ।

ସୂଚନା— ଶିକ୍ଷକ ମହାଶୟ ମନରୁ କେତେ ଗୁଡ଼ିଏ ବାକ୍ୟ କୋଠ କରି ପଠନ ଲିଖନ କରାଇବେ ।

ଉଦାହରଣ:— ୧- ରମ ଗରବ ପିଲା । ୨- ପଇଡ଼ ପାଣି ମିଠା । ୩- ଛବି ବହି ଦେଖ ।

'ଈ'କାର ଶିକ୍ଷା ଦେବା ସମୟରେ ହାତୀ ଦେହ ଓ ତାର ଚିତ୍ର ଗୁଡ଼ିକ ଆଗରେ ବ୍ୟବହାର କରାଯିବ । ଛବି ବହିର ୨୬ ୨୭ ପୃଷ୍ଠା ପଠନ ଲିଖନ ହାତୀ ଶବ୍ଦର ବିଶ୍ଳେଷଣ କରାଇବେ ।

୧୦ । ହାତୀ = ହ + ା = ହା, ହା + ତ = ହାତ

ତ + ୀ (ଈ କାର) = ତୀ, ହା + ତୀ = ହାତୀ

ଏହାପରେ ଘରେ କଣ କଣା ଖାଣା ଗତ ରୁ ଗୀତ ଆଦି ଶବ୍ଦ ମାନଙ୍କର ବହୁଳ ଆଲୋଚନା ।

ବାକ୍ୟ ଗଠନ:— ୧- ସୀତା ଗାଏ ଗୀତ । ୨- ଖାଣା ଚାର ମିଠ । ୩- ଘାଟିଲ କଟଲୀ, କର ରସାବଳୀ । ମୋ ଛବି ବହିର ୨୮ ୨୯ଶ ପୃଷ୍ଠାର ପଠନ ଓ ଲିଖନ କରାଯିବ ।

୧୧ । ବିଶ୍ଳେଷଣ ମାଧ୍ୟମରେ ହ୍ରସ୍ୱ ଉକାର ଶିକ୍ଷା ।
ନ + ଠ = ନଠ
ଠ + ୁ (ହ୍ରସ୍ୱଉ) = ଠୁ ନ + ଠୁ = ନଠୁ ।
ଶବ୍ଦଚିତ୍ର — ଝଡ଼ୁ ଗୁଆ ଖୁଆ ଗୁଡ଼ କୁକୁର ଆଦି । କୁ ଖୁ ଗୁ ଘୁ ଚୁ ଛୁ ଜୁ ଝୁ

୧୨ । ବାକ୍ୟ ଲିଖନ ଓ ପଠନ:— ୧- ଉଡ଼ୁଆର ବଜାର ୨- ପଢ଼ୁଲଣି ଖଡ଼ୁକ ।

୧୩ । କ କା କି କୀ କୁ, ଗ ଗା ଗି ଗୀ ଗୁ; ଖ ଖା ଖି ଖୀ ଖୁ; ଘ ଘା ଘି ଘୀ ଘୁ ଆଦିର ବହୁଳ ଆଲୋଚନା ।

୧୪ । ଛବି ବହିର ୩୦ଶ ଓ ୩୧ଶ ପୃଷ୍ଠା ପଠନ ଲିଖନ ।

୧୫ । ୂ ଊ କାର ଶିକ୍ଷାର ବିଶ୍ଳେଷଣ । ତ + ର = ତର, ତ + ଶ = ତଶ
ତ + ୂ ଊକାର = ତୂ, ତୂ + ଶ = ତୂଶ । ମଳାରୁ ମୂଳା, କଳରୁ କୂଳ, ତଳରୁ ତୂଳ ଇତ୍ୟାଦି ଶବ୍ଦ ମାଧ୍ୟମରେ ଊକାର ଶିକ୍ଷା ।

୧୬ । ଛବି ବହିର ୩୨ଶ ଓ ୩୩ଶ ପୃଷ୍ଠାର ପଠନ ଲିଖନ ଋ ଫଳା ( ୃ ) ଶିକ୍ଷା ।
ବକ୍ଷ — ବୃକ୍ଷ, ମଗ — ମୃଗ, କପା — କୃପା ।

୧୭ । କୃ, ଖୃ, ଗୃ ଘୃ ଚୃ ଛୃ ଜୃ ଝୃ ତୃଣ, କୃଷି, ମୃଗ, ତୃଷ୍ଣା . ଅମୃତ ।

୧୮ । ଛବି ବହିର ୩୪ଶ ଓ ୩୫ଶ ପୃଷ୍ଠାର ପଠନ ଓ ଲିଖନ ।

୧୯ । 'ଏ' କାର ଶିକ୍ଷା ଓ ତାର ବିଶ୍ଳେଷଣ । ତ + ର = ତର ତ + େ = ତେ
ତେ + ର = ତେର, ଖଳ ରୁ ଖେଳ ଦଶରୁ ଦେଶ ବଶରୁ ବେଶ ।

୨୦ । କେ ଖେ ଗେ ଘେ ଚେ ଛେ ଜେ ଝେ । ବାକ୍ୟ ଲିଖନ ଓ ପଠନ ।
ଫୁଲ ଫୁଟି ନାନା ଜାତି, ହସି ଉଠ ବଗିଚାଟି ।

୨୧ ରୁ ୨୪ । ଛବି ବହିର ୩୬ ଓ ୩୭ଶ ପୃଷ୍ଠାର ପଠନ ଓ ଲିଖନ । ପୁନରାଲୋଚନା ଓ ପ୍ରଥମ ପରୀକ୍ଷା ।

## ଅକ୍ଟୋବର ୩ ସପ୍ତାହ — ୧୮ ପାଠ

୧ ରୁ ୩ । ବିଶ୍ଳେଷଣ ମାଧ୍ୟମରେ ଐକାର 'ୈ' ଶିକ୍ଷା । ତ + ଳ = ତଳ, ତ + ଐ = ତୈ
ତୈ + ଳ = ତୈଳ କୈ, ଖୈ, ଗୈ, ଘୈ, ଚୈ, ଛୈ ଇତ୍ୟାଦି ।

୪ ଓ ୫ କୈଳାସ— କ+ଳ+ସ = କଳସ କ+ ୈ = କୈ; ଳ + 'ା' = ଳା
କୈ + ଳା + ସ = କୈଳାସ ଶବ୍ଦ— ଗୈରିକ, ଦୈନିକ; ବୈଶାଖ ।
ବାକ୍ୟ— ବୈଶାଖ ମାସରେ ଝାଞ୍ଜିଆ ଖରା । ବୈତରଣୀ ବାଲି ଘର ତାତଲା ।
ଛବି ବହିର ୩୮ ଓ ୩୯ଶ ପୃଷ୍ଠାର ପଠନ ଓ ଲିଖନ ।

୬ । ବିଶ୍ଳେଷଣ ମାଧ୍ୟମରେ ଓକାର ( ୋ ) ଶିକ୍ଷା— କୋଡ଼ = କ + ଡ଼ = କଡ଼
କ+ଏକାର = କେ; କେ+ 'ା' ଆକାର = କୋ ଡ଼ + ି ଇକାର = ଡ଼ି
କୋ + ଡ଼ି = କୋଡ଼ି । ଘଳରୁ ଘୋଳ; ଘଡ଼ରୁ ଘୋଡ଼ ମାଧ୍ୟମରେ ଶିକ୍ଷା ଦିଆଯିବ ।

୭ ଓ ୮ । ଙ୍କୋ, ଖୋ; ଗୋ, ଘୋ; ଚୋ, ଛୋ; ଜୋ; ଝୋ ।

୯ ଓ ୧୦ । ଘୋଡ଼ା, ଯୋଗାଡ଼, ସୋପାନ, ପୋଟଳ ଆଦି ଶବ୍ଦ ମାନଙ୍କର ଶିକ୍ଷା ପଠନ ଲିଖନ ।

୧୧ ଓ ୧୨ । ବାକ୍ୟ ଲିଖନ:— (i) ଚୋଟଳ ଭଜା, ଆଳୁ ପରଜା ।
(ii) ପଖାଳ ସାଥିକୁ କମିତ ମଜା ।

୧୩ ଓ ୧୪ । ଛବି ବହିର ୪୦।୪୧ ପୃଷ୍ଠା ପଠନ, ଲିଖନ କରାଯିବ ।

୧୫ ଓ ୧୬ । ଆ' କାର ଠାରୁ ଔକାର ଯାଏ ମାତ୍ରା ସମ୍ବଳିତ ଶବ୍ଦ ମାନଙ୍କର ପୁନରାଲୋଚନା ।

୧୭ ଓ ୧୮ । ପୂର୍ବ ପଠିତ ଶବ୍ଦ ମାନଙ୍କର ଲିଖନ ଓ ପଠନ ସମ୍ବନ୍ଧୀୟ ପୁନରାବୃତ୍ତି ।

## ନଭେମ୍ବର ୪ ସପ୍ତାହ — ୨୪ ପାଠ

୧ । ବିଶ୍ଳେଷଣ ମାଧ୍ୟମରେ ଔକାର ଶିକ୍ଷା ଦିଆଯିବ ।
ଚ + କ = ଚକ, ଚ + ୌ = ଚୌ
କ + ି ଇକାର = କି ଚୌ + କି = ଚୌକି ।

୨ । ଶବ୍ଦ — ମୌଜା, ବୌଦ୍ଧ, ଗୌର ପଠନ ଲିଖନ ।

୩ ରୁ ୬ । କୌ, ଖୌ ଗୌ ଘୌ ଆଦି ଶିକ୍ଷା ।

୭ । ଚୌକିଦାର ଚୌଦୁଆର ଯୌତୁକ ।

୮ ରୁ ୧୦ । ବାକ୍ୟ ଲିଖନ ଓ ପଠନ—
(i) ପୌଷ ଗୌତମ ଗୌର ଚୌକିଦାର କୌତୁକ ନୌକା ।
(ii) ଲୁଗା କଳ ଆଉ କାଗଜ କଳ ଚୌଦୁଆର ଠାରେ ଦେଖିବ ଭଲ ।

୧୧ ଓ ୧୨ ଛବି ବହିର ୪୨।୪୩ ପୃଷ୍ଠାର ପଠନ ଓ ଲିଖନ ।

୧୩ ରୁ ୧୮ । ଆକାର ଠାରୁ ଔକାର ପର୍ଯ୍ୟନ୍ତ ମାତ୍ରା ସୂତ୍ରକର ପୁନରାବୃତ୍ତି।

୧୯ ଓ ୨୦ । ବିଭିନ୍ନ ମାତ୍ରା ସମ୍ବଳିତ ଖଣ୍ଡ ବାକ୍ୟର ପଠନ ଲିଖନ (ଶିକ୍ଷକ ପ୍ରସ୍ତୁତ କରିବେ)

୨୧ ଓ ୨୨ । ଛବି ବହିର ୪୪ ପୃଷ୍ଠା ପଠନ ଲିଖନ ।

୨୩ ଓ ୨୪ । ଛବି ବହିର ୪୫ ପୃଷ୍ଠା ପଠନ ଓ ଲିଖନ ।

## ଡ଼ିସେମ୍ବର ୩ ସପ୍ତାହ ୧୮ ପାଠ

୧ । ଛବି ବହିର ୪୬ ପୃଷ୍ଠା ପଠନ ଓ ଲିଖନ ।

୨ ଓ ୩ । ଆକାର ଓ ଇ କାର ପର୍ଯ୍ୟନ୍ତ ମାତ୍ରା ସମ୍ବଳିତ ବିଭିନ୍ନ ଶବ୍ଦ ଓ ଖଣ୍ଡ ବାକ୍ୟର ପଠନ ଓ ଲିଖନ (ଛବି ବହିର ୪୬ ପୃଷ୍ଠା)

୪ । ଛବି ବହିର ୪୭ ପୃଷ୍ଠା ପଠନ ।

୫ । ଛବି ବହିର ୪୮ ପୃଷ୍ଠାର କବିତା ପଠନ ।

୬ । 'ବଳର ବଳ' ଗପଟିର ପଠନ ।

୭ ଓ ୮ । ଏ କାର ଠାରୁ ଔ କାର ପର୍ଯ୍ୟନ୍ତ ମାତ୍ରା ଗୁଡ଼ିକର ପୁନରାଲୋଚନା ପାଇଁ ବିଭିନ୍ନ ବାକ୍ୟ ଶବ୍ଦ ଆଦିର ପୁନରାଲୋଚନା ।

୯ ଓ ୧୦ । ( ँ ) ଚନ୍ଦ୍ରବିନ୍ଦୁ ଶିକ୍ଷା । କୁଆ କୁଆଁ , ନାଆ ନାଆଁ ।

୧୧ । ଇଁ ଓଁ ଣିଁ ଘଁ ଆଦିର ଉଚ୍ଚାରଣ ଶିକ୍ଷା ।

୧୨ । ନଇଁଛି, କଅଁଳ, ଭୁଇଁ, ବାଉଁଶ ଆଦି ଚନ୍ଦ୍ରବିନ୍ଦୁ ସମ୍ବଳିତ ଶବ୍ଦର ଉଚ୍ଚାରଣ ପଠନ ।

୧୩ । ଛବି ବହିର ୪୯ ଓ ୫୦ ପୃଷ୍ଠାରେ ଥିବା ଗୀତ ଓ ବାକ୍ୟ ଗୁଡ଼ିକର ପଠନ ।

୧୪ । ( ୍ ) ହଳନ୍ତ ଚିହ୍ନର ପରିଚୟ ଉଚ୍ଚାରଣ ଓ ଲିଖନ ।

୧୫ । ଚଳ, ଚଳ୍, ଠକ; ଠକ୍, ଖଟ, ଖଟ୍, କାବ୍, କୋଟ, ରକେଟ୍, ପେନ୍ସିଲ୍, ଠିକ୍, ନୋଟ୍ ପକେଟ; ହୁଇସିଲ୍, ଆଦିର ପଠନ ଓ ଲିଖନ ।

୧୬ । ଲିଖନ ପାଇଁ ଝୁଲରେ ହାଣ୍ଡି ଝୁଲ୍ କାଆ ପାଣି ଖାଇ ଫୁଲ୍ ।

୧୭ । ଟେଲିଫୋନ୍ ର ମଜା ଗୀତ ପଢ଼ିବେ ଓ ଲେଖିବେ ।

୧୮ । ଛବି ବହି (୧ମାର୍ଦ୍ଧ)ର ୫୩ ଓ ୫୪ ପୃଷ୍ଠାରେ ଥିବା ଗୀତର ପଠନ ।

( ଛବି ବହି ପ୍ରଥମାର୍ଦ୍ଧ ଶେଷ )

## ଛବି ବହି ୨ୟାର୍ଦ୍ଧ ଆରମ୍ଭ

## ଜାନୁଆରୀ ୪ ସପ୍ତାହ — ୨୪ ପାଠ

୧ ଓ ୨ । ୨ୟାର୍ଦ୍ଧ ବହିର ୧ମ ପୃଷ୍ଠାରେ ଥିବା ସାଥି ବିଷୟଟିର ପଠନ ।

୩ । ଅନୁସ୍ୱାର ଶିକ୍ଷା ଂ

ଉଚ୍ଚାରଣ ପାଇଁ କଂ ଖଂ ଗଂ ଘଂ ଚଂ ଛଂ ଜଂ ଇତ୍ୟାଦି ହସ ହଂସ ମାସ ମାଂସ । ସଂସାର ଅଂଶୁପା ସିଂହାସନ ସମ୍ବାଦ ଆଦି ଅନୁସ୍ୱାର ଯୁକ୍ତ ଶବ୍ଦର ପଠନ ।

୪ । ଅନୁସ୍ୱାର ଯୁକ୍ତ ଵ୍ୟଞ୍ଜନ ଶବ୍ଦର ଲିଖନ ।

୫ । ସ୍ୱାଧ ପୁସ୍ତକର ୩ୟ ପୃଷ୍ଠା ହଂସ ଖେଳେ......ରୁ ପଠନ ।

୬ । ଃ ବିସର୍ଗ ଶିକ୍ଷା ଅଃ ଆଃ ବିସର୍ଗର ଉଚ୍ଚାରଣ ଶିକ୍ଷା ଓ ଅଭ୍ୟାସ ।

୭ । ଦୁଃଖୀ ଦୁଃଶାସନ ଦୁଃଖିତ ଆଦିର ପଠନ ସ୍ୱାଧ ବହିର ୪ର୍ଥ ଓ ୫ମ ପୃଷ୍ଠାର ପଠନ

୮ । ବିସର୍ଗ ସମ୍ବଳିତ ଶବ୍ଦର ଲିଖନ ।

୯ ଓ ୧୦ । ପୂର୍ବ ପଠିତ ସମସ୍ତ ଅକ୍ଷର ଓ ମାତ୍ରା ପ୍ରତି ଦୃଷ୍ଟି ରଖି ଵ୍ୟଞ୍ଜନ ଶବ୍ଦ ଓ କ୍ଷୁଦ୍ର ବାକ୍ୟ ମାନଙ୍କର ପଠନ ଓ ଲିଖନ ।

୧୧ । ଯୁକ୍ତାକ୍ଷର ଆରମ୍ଭ ଙ୍ + କ = ଙ୍କ

୧୨ । ସ୍ୱାଧ ବହିର ୬ଷ୍ଠ ପୃଷ୍ଠାର ପଠନ ।

୧୩ । ସ୍ୱାଧ ବହିର ୭ମ ପୃଷ୍ଠାରେ ଥିବା ବିଷୟ ଟଙ୍କାଶାଳାରେ ... ... ... ମୁଠାଏ ଟଙ୍କାର ପଠନ ।

୧୪ । ଲିଖନ ପାଇଁ ଙ୍କ ସମ୍ବଳିତ କେତେକ ଶବ୍ଦ ଓ ଖଣ୍ଡ ବାକ୍ୟ ଯଥା କାଙ୍କଡ଼ ଅଙ୍କୁର ଢଙ୍କି ବଙ୍କୁବାବୁ । ଢିଙ୍କିରେ ଧାନ କୁଟାଯାଏ । କଖାରୁ ଡଙ୍କରେ ଫୁଲ ଫୁଟିଛି ।

୧୫ । 'ଙ୍ଗ' ଶିକ୍ଷା ଙ + ଗ = ଙ୍ଗ ଡଙ୍ଗା, ବେଙ୍ଗ, ଜଙ୍ଗଲ, ବାଙ୍ଗୁଡ଼, ଅଙ୍ଗୁର ।

୧୬ । ସ୍ୱାଧ ବହିର ୯ମ ପୃଷ୍ଠାର ବିଷୟ - ଟଙ୍ଗରଫୁଲ ...ଫସଲ କାଟି ର ପଠନ ।

୧୭ । 'ଙ୍ଗ' ଶବ୍ଦର ଲିଖନ ପାଇଁ— ମଙ୍ଗରାଜ, ଜଙ୍ଗଲ; ମୃଦଙ୍ଗ, ଭିଙ୍ଗୁଡ଼ି; ଲବଙ୍ଗ, ଲିଙ୍ଗରାଜ । ଟାଙ୍ଗିଆରେ କାଠ କାଟ । ଭିଙ୍ଗୁଡ଼ି ମାଛ କିଣି ଆଣ ।

୧୮ । 'ଞ୍ଚ' ଶିକ୍ଷା ପାଇଁ ଞ + ଚ = ଞ୍ଚ କଞ୍ଚ, ଛୁଞ୍ଚ, କଞ୍ଚଣା, ଛଞ୍ଚାଣ, ପାଞ୍ଚଣ ପଠନ ।

୧୯ । ସ୍ୱାଧ ବହି ପୃଷ୍ଠା ୧୧ର ପାଞ୍ଚୋଟି କଥା' ର ପଠନ ।

୨୦ । 'ଞ୍ଚ' ଶବ୍ଦ ଲିଖନ ପାଇଁ—

ମଞ୍ଚାରୁ ପଡ଼ି ମାମୁଁ ମଲେ, ମୋତେ ନ ଦେଲେ ରଞ୍ଜିନ । କାଞ୍ଚନ ମନ ନାହିଁ ମୋର ମାଗନ୍ତି ଏଥ କୃପା ତୋର ।

୨୧ । 'ଣ୍ଟ' ଶିକ୍ଷା— ଣ୍ + ଟ = ଣ୍ଟ ଅଣ୍ଟ, ଖଣ୍ଟ, ଝୁଣ୍ଟ, ଘଣ୍ଟି, ଝିଣ୍ଟିକାର ପଠନ ।

୨୨ । ସ୍ୱାଧ ପୁସ୍ତକର 'ଘଣ୍ଟା' ବିଷୟ (ପୃଷ୍ଠା-୧୩) ପଠନ ।

୨୩ । ଲିଖନ ପାଇଁ— ବେଳକେ ବାଜୁଛି ଘଣ୍ଟି । ସେବେକେ ଦୁଏ ପେଟ ଘାଣ୍ଟି । ଅଣ୍ଟେ ଧରି କଣି ଝିଣ୍ଟିକା ଗୋଟିଏ । ସାନ ଛୁଆ ପାଇଁ ଆହାର ଯୋଗାଏ ।

୨୪ । ପଠିତ ଙ୍କ, ଙ୍ଗ, ଓ ଣ୍ଟ ଅକ୍ଷର ଗୁଡ଼ିକର ପୁନରାଲୋଚନା ପାଇଁ କେତେକ ଶବ୍ଦ ଓ ଖଣ୍ଡ ବାକ୍ୟର ପଠନ ଓ ଲିଖନ ।

## ଫେବୃଆରୀ ୪ ସପ୍ତାହ — ୨୪ ପାଠ

୧ । ଣ୍ଡ ଶିକ୍ଷା— ଣ୍ + ଡ = ଣ୍ଡ ଅଣ୍ଡା, ଗଣ୍ଡା, ପେଣ୍ଡୁ, ଡେଣ୍ଡା; ଗୁଣ୍ଡୁଚି; ଏଣ୍ଡୁଅ ଶବ୍ଦ ଗୁଡ଼ିକର ପଠନ ।

୨ । ୨ୟାଙ୍କ ବହିର ୧୫ଶ ପୃଷ୍ଠାରେ ଥିବା ଭେଣ୍ଡି ଗୋଟିଏ ··· କଦଳୀ ପେଣ୍ଡା ବିଷୟର ପଠନ ।

୩ ଓ ୪ । ଲେଖନ ପାଇଁ — ପେଣ୍ଡୁ ପରି ହୋଇଥିବା ବଡ ମଣ୍ଡା ଖାଇ ଗିଳିଦେଲା ଧବ ଗଣ୍ଡା ଖଣ୍ଡା । ଗୁଣ୍ଡୁଚି ମୂଷା କହୁଛି ଡାକ ଶୁଣ ଏଣ୍ଡୁଅ ଭାଇ ମୁଣ୍ଡ ଟେକାଇ କି କଥା କହୁ ଜାଣିନ ପାରୁନାହିଁ ।

୫ । ନ୍ତ ଶିକ୍ଷା— ନ୍ + ତ = ନ୍ତ ଦାନ୍ତ, ଚନ୍ତ, ଯନ୍ତା, ବନ୍ତା; ତେନ୍ତୁଳି, ମାହନ୍ତ ଆଦି ଶବ୍ଦ ଗୁଡ଼ିକର ପଠନ ।

୬ । ୨ୟାଙ୍କ ବହି ପୃଷ୍ଠା ୧୭ର 'ବସନ୍ତ ଋତୁ' ବିଷୟରେ ପଠନ ।

୭ ଓ ୮ । ଲେଖନ ପାଇଁ- ଦାନ୍ତ ନ ଘଷିଲେ ରୋଗ ହୁଏ । ତେନ୍ତୁଳିକୁ କଇଁଆ କହନ୍ତି । ତନ୍ତରେ ଲୁଗା ବୁଣା ଯାଏ । ବସନ୍ତ ଋତୁ ସବୁ ଋତୁଠାରୁ ଭଲ ।

ଖଟା ଲାଗେ କରକୋଳି ଆହୁରି ତେନ୍ତୁଳି, କେତେ ଖଟା ଚାଖିଛନ୍ତି ଲାଗେ ନଉକୋଳି ?

୯ । ନ୍ଦ- ନ୍ + ଦ = ନ୍ଦ

ଜନ୍ଦା, ମନ୍ଦା; କନ୍ଦା, ବନ୍ଦର, ମନ୍ଦର, ଗୁନ୍ଦୁଆ, ମନ୍ଦାର ଏହି ଶବ୍ଦ ଗୁଡ଼ିକର ପଠନ ।

୧୦ ଓ ୧୧ । ୨ୟାଙ୍କ ବହିର ୧୯ଶ ପୃଷ୍ଠାର ଗୁଡ଼ୁରୁ ଜନ୍ଦ ··· ··· ନେବ ପାଗୁଳି ବିଷୟର ପଠନ ।

୧୨ ରୁ ୧୫ । ଲେଖନ ପାଇଁ:—

(କ) ଜେନ୍ଦୁ ଘଣ୍ଟ, ମନ୍ଦାରଫୁଲ, ବାନ୍ଦୁ ସାଗର; ନନ୍ଦନକାନନ, ଫୁଲଚନ୍ଦନ; ଧନ୍ଦାଘନ୍ଦର ।

(ଖ) ଆଗରେ ପଡ଼ିଲ ପିପିଲି ବଜାର, ସେଠାରୁ ଗୁନ୍ଦୁଆ ବଣେ କି ସୁନ୍ଦର ।

(ଗ) ସାତ ଥର ଯିବ ଗଙ୍ଗା, ଥରେ ଯିବ ଯଜ୍ଞ ଚନ୍ଦର ଭଙ୍ଗା, ମୁହିଁ ପଢ଼ିଯିବ ରଙ୍ଗା ।

(ଘ) ନଣ୍ଡ ପାଣି ଜଳ ଜଳ; ସମୁଦ୍ରର କୂଳେ ପୁରୀ ମନ୍ଦର, ତହିଁ ଆନନ୍ଦ ବଜାର ।

୧୬ । ୨ୟାଙ୍କ ବହି ପୃଷ୍ଠା ୨୦ଶ କୌତୁକ ପ୍ରଶ୍ନ ବିଷୟର ୪ ପଦ (ଟିକି ଟିକି ··· ··· ଖାଇଲ ନାହିଁ) ପଠନ ।

୧୭ । କୌତୁକ ପ୍ରଶ୍ନର ୫ମରୁ ୭ମ ପଦ ଟାହିଆ ··· ··· ପାରିଲ ବୁଲି) ପର୍ଯ୍ୟନ୍ତ ପଠନ ।

୧୮ । 'କୌତୁକ ପ୍ରଶ୍ନ' ବିଷୟରୁ ବାଛିଲା ପଦର ଲେଖନ ।

୧୯ ଓ ୨୦ । ୨ୟାଙ୍କ ବହି 'ଫୁଲ ସଙ୍ଗାତ' ବିଷୟର ପଠନ ।

୨୧ । 'ଦୁଇ ସଙ୍ଗାତ' ବିଷୟରେ ପ୍ରଶ୍ନ ଆଲୋଚନା ଏବଂ କେତେକ ବାକ୍ୟ ଲେଖନ ପାଇଁ ଦିଆଯିବ ।

୨୨ । ଞ୍ଜ ଶିକ୍ଷା ଞ୍ + ଜ = ଞ୍ଜ
ପିଞ୍ଜରା, ଇଞ୍ଜିନ, ମଞ୍ଜା; ଝାଞ୍ଜି, ଗଞ୍ଜା, ଲଞ୍ଜ ଆଦି ଶବ୍ଦ ଗୁଡ଼ିକର ପଠନ ।

୨୩ । ସଞ୍ଜ ହେଲାଣି ଦୀପ ମିଞ୍ଜି ମିଞ୍ଜି ଜଳୁଛି; ପଣ୍ଡିତେ ପାଞ୍ଜି ଦେଖୁଛନ୍ତି, ଖରବଦନେ ଝାଞ୍ଜି ପବନ ବହେ । ଏହି ବାକ୍ୟ ଗୁଡ଼ିକର ପଠନ ।

୨୪ । ଲେଖନ ପାଇଁ:— ଆଞ୍ଜୁଳା, ଭଞ୍ଜନଗର, କରଞ୍ଜ, ମଞ୍ଜା, ଲଞ୍ଜାଡାଏ ଉଠିଲେ ଅମଙ୍ଗଳ ହୁଏ, କରଞ୍ଜ କାନ୍ତକାଠି ବଡ଼ ଉପକାରୀ ।

## ମାର୍ଚ୍ଚ ୩ ସପ୍ତାହ — ୧୮ ପାଠ

୧ ରୁ ୫ । ପୂର୍ବ ପଠିତ ଯୁକ୍ତାକ୍ଷର ଗୁଡ଼ିକର ଆଲୋଚନା ବିଭିନ୍ନ ଶବ୍ଦ ଓ ବାକ୍ୟ ମାଧ୍ୟମରେ ସେ ଗୁଡ଼ିକର ପଠନ ଓ ଲେଖନର ପରୀକ୍ଷା । (ଙ୍କ, ଙ୍ଗ, ଣ୍ଡ, ନ୍ତ; ନ୍ଦ, ଞ୍ଜ, ଣ୍ଠ)

୬ । ମ୍ବ ଅକ୍ଷର ଶିକ୍ଷା ମ୍ + ବ = ମ୍ବ
ଆମ୍ବ, ତମ୍ବୁ, ଶିମ୍ବ, ଲେମ୍ବୁ, ଡାଳିମ୍ବ, କମ୍ବଳ, ଅମ୍ବିଳର ପଠନ ।

୭ । ୨ୟ ଭାଗ ବହିର ୨୩ଶ ପୃଷ୍ଠାରେ ଥିବା ବିଷୟର ପଠନ ।

୮ । ଲେଖନ ପାଇଁ— କଦମ୍ବ ଫୁଟଇ ବରଷା ଦିନରେ, ଆମ୍ବ ପାଚେ ଖରା ଦିନେ ।
ଡିବ ଡିବ ହୋଇ ବାଜଇ ଡମ୍ବରୁ, ଚୁମ୍ବକ ଲୁହାକୁ ଟାଣେ ।

୯ । ନିମ୍ବ ଗଛର ଛେଲି, ପତ୍ର, ଫୁଲ, ଫଳ ଓ ଚେରକୁ ପଞ୍ଚନିମ୍ବ କହନ୍ତି । ଲେମ୍ବୁରସ ଖଟା ଲାଗେ । ବମ୍ବେ ଭାରତର ଏକ ବଡ଼ ସହର ।

୧୦ । ଣ୍ଟ ଶିକ୍ଷା ଣ୍ + ଟ = ଣ୍ଟ
ଆଣ୍ଟୁ, କଣ୍ଟି, ଘଣ୍ଟି, ଶୁଣ୍ଟି, ପାଣ୍ଟି, ଲଣ୍ଟନ, ଝଣ୍ଟିଲ, କୁଣ୍ଟିତ, ବୈକୁଣ୍ଠ ଏହି ଶବ୍ଦ ଗୁଡ଼ିକର ପଠନ ।

୧୧ । ୨ୟ ଭାଗ ବହିର ୨୪ଶ ପୃଷ୍ଠାରେ ଥିବା ଲେଖାର ପଠନ ।

୧୨ । ଲେଖନ ପାଇଁ— ଲଣ୍ଟନ ଲଗାଅ ଆଣ, ଶୋଷରେ ତା କଣ୍ଠ ଶୁଖି ଯାଉଛି । ବେଲଗୁଣ୍ଟା ଏକ ପେଣ୍ଟ ଜାଗା । କୁଣ୍ଠୀକୁ ଦେବା ପାଇଁ କୁଣ୍ଠିତ ହୁଅ ନାହିଁ ।

୧୩ । ଘଣ୍ଟି ଧନ କରିଥିଲ, ଚଣ୍ଟି କାଟି ଦେଇ କେଉଁଠି ଗଲୁ ଧନ, ମରିବି ମୁଁ ଝୁରି ଝୁରି ।

୧୪ ରୁ ୧୮ । ପୂର୍ବ ପଠିତ ଯୁକ୍ତାକ୍ଷର ଗୁଡ଼ିକର ପୁନରାଲୋଚନା ପାଇଁ ବିଭିନ୍ନ ଶବ୍ଦ, ବାକ୍ୟ ଆଦି ପଢିବା ଓ ଲେଖିବା ପାଇଁ ଦିଆଯିବ ।

## ଏପ୍ରିଲ ୪ ସପ୍ତାହ — ୨୪ ପାଠ

୧ । ଣ୍ଟ ଶିକ୍ଷା ଣ୍+ଟ=ଣ୍ଟ ଷଣ୍ଢ, ମେଣ୍ଢା, କୁଣ୍ଢ, ଶୁଣ୍ଢ, କଣ୍ଢେଇ, ପାଣ୍ଢୋଇ ସଣ୍ଢ ଆସିର ପଠନ ।

୨ ୩ । ୨ୟାର୍ଦ୍ଧ ବହିର ୨୬ଶ ପୃଷ୍ଠାରେ ଥିବା ବିଷୟର ପଠନ ।

୪ । ଣ୍ଡ ଓ ଣ୍ଢ ମଧ୍ୟରେ ଥିବା ପାର୍ଥକ୍ୟର ଧାରଣା ପାଇଁ ମୁଣ୍ଡ, ଷଣ୍ଢ ଗଣ୍ଡା, ଶୁଣ୍ଢ ଇତ୍ୟାଦି ଶବ୍ଦଗୁଡ଼ିକୁ ପାଖ ପାଖି ଲେଖି ବାରମ୍ବାର ପଠନର ଅଭ୍ୟାସ ।

୫ । ଲେଖନ ପାଇଁ — ମେଣ୍ଢା ଲୋମରୁ ଗରମ ପୋଷାକ ହୁଏ ।
ଘୋଡ଼ାକୁ ପାଣ୍ଢୋଇ ବି କହନ୍ତି । ମାଟି କଣ୍ଢେଇ ଚଞ୍ଚଳ ଭାଙ୍ଗିଯାଏ ।

୬ । ମେଣ୍ଢା ମୁଣ୍ଡଟି ଭାରି ଟାଣ । ତା ମୁଣ୍ଡିଆକୁ ସାବଧାନ ।

୭ । ଷଣ୍ଢ ଖାଇଯାଏ ଧାନ; କଣ୍ଢେଇ କୁଣ୍ଢେଇ ଖେଳନା ଧନ, ବାପାଙ୍କୁ ଯା' ଡାକି ଆଣ ।

୮ । ନ୍ଧ ଶିକ୍ଷା ନ୍+ଧ=ନ୍ଧ ଗନ୍ଧ, ଅନ୍ଧ, ବନ୍ଧ ସିନ୍ଧୁ, ବନ୍ଧୁ, ବନ୍ଧୁକ, ଅନ୍ଧାର, ସନ୍ଧାନ, ବନ୍ଧନର ପଠନ ।

୯ । ୨ୟାର୍ଦ୍ଧ ବହିର ୨୭ ପୃଷ୍ଠାର ବିଷୟ ପଠନ ।

୧୦ । ଲେଖନ ପାଇଁ — ସୈନ୍ଧବ ଲୁଣ, ଏକୁଟିଆ ବନ୍ଧ, ରଜନୀଗନ୍ଧା, ଅନ୍ଧ ଅନ୍ଧଶ୍ରୀ, ବନ୍ଧୁଘର, ଅନ୍ଧାର ଘର ।

୧୧ । ମନ୍ଦାକନୀରେ ହାଇକୁଦ ବନ୍ଧ । କନ୍ଧମାଳରେ ସିନ୍ଧୁର ବନ୍ଧୁଘର ।

୧୨ । ସାତ ସମୁଦ୍ର ଡେଇଁ ପାର ହନୁମାନ, ଲଙ୍କା ଗଡ଼େ ସୀତାଙ୍କର ପାଇଲେ ସନ୍ଧାନ । ଅର୍ଜୁନ ଲକ୍ଷ୍ୟ ବନ୍ଧିଲେ, ପାଞ୍ଚାଳ ରଜା ଝିଅଙ୍କୁ ବାଣ୍ଟ ଦେବେ ।

୧୩ । ' ୍ନ ' ନ ଫଳା ଶିକ୍ଷା ଜହ୍ନ, ଚିହ୍ନ, ଜହ୍ନି, ଭିନ୍ନ, ଅନ୍ନ, ସ୍ନାନ, ଜାହ୍ନବୀ, କହ୍ନାଇ, ଉନ୍ନତି, ଜନ୍ମୋତ୍ସ, ବାଧା ଘ୍ନର ପଠନ ।

୧୪ । ୨ୟାର୍ଦ୍ଧ ବହିର ୨୭ଶ ପୃଷ୍ଠାର ପଠନ ।

୧୫ । ଲେଖନ ପାଇଁ — କଳା କଲେବର କହ୍ନାଇ ସଙ୍ଗେ ଗୋପାଳି ସୁତ; କରନ୍ତି ମଥୁରା ବଜରେ ଦାଣ୍ଡେ ଦେଖ ସଙ୍ଗୀତ ।

୧୬ । ' ୍ମ ' ମ ଫଳା ଶିକ୍ଷା — ଛଦ୍ମ, ଭସ୍ମ, ଗ୍ରୀଷ୍ମ, ଗୁଲ୍ମ, ବାଲ୍ମୀକି, ଶାଲ୍ମଳୀ, ଉଦ୍ଗେର — ପଠନ । ଲକ୍ଷ୍ମୀପୂଜା, ଜନ୍ମଦିନ, ଛଦ୍ମବେଶ, ମହାତ୍ମା ଗାନ୍ଧୀ ପଠନ ।

୧୭ । ୨ୟାର୍ଦ୍ଧ ବହିର ୨୮ଶ ପୃଷ୍ଠା ପଠନ ।

୧୮ । ୨ୟାର୍ଦ୍ଧ ବହିର ୨୮ଶ ପୃଷ୍ଠାରୁ କେତେକ ବାକ୍ୟର ଲେଖନ ।

୧୯ । ୨ୟାର୍ଦ୍ଧ ବହି ପୃଷ୍ଠା ୨୯ର ବାଘ ଶିକାର ବିଷୟର ପଠନ ।

୨୦ । ଉକ୍ତ ବିଷୟର ପ୍ରଶ୍ନ ଆଲୋଚନା ।

୨୧ । ' ୍ର ' ଶିକ୍ଷା —

ପତ୍ର, ପାତ୍ର, ମାତ୍ର, ଛାତ୍ର, ମୁଦ୍ରା, ନିଦ୍ରା, ସମୁଦ୍ର; ପ୍ରଭାତ, ଭ୍ରମଣ, ଗ୍ରହଣ, ଆଗ୍ରହ; ଶୁକ୍ରବାର, ପରିଶ୍ରମ, ବଜ୍ରଗ୍ରାମ, ସେବାଶ୍ରମ - ଏହି ଶବ୍ଦ ଗୁଡ଼ିକର ବାରମ୍ବାର ପଠନ ଅଭ୍ୟାସ ।

୨୨ । ୨ୟାର୍ଦ୍ଧ ବହିର ଶେଷ ପୃଷ୍ଠା ବିଷୟର ପଠନ ।

୨୩ । ଲିଖନ ପାଇଁ— ଛାତ୍ର ଛାତ୍ରୀମାନେ ପରୀକ୍ଷା କେନ୍ଦ୍ରକୁ ଗଲେ । ସମାଜ ଗୋଟିଏ ସମ୍ବାଦ ପତ୍ରର ନାମ । ତୁଳସୀ ପତ୍ର ବଡ଼ ଉପକାରୀ ।

୨୪ । ତୁଳସୀ ପତ୍ରର ରସ, ମହୁ ସଙ୍ଗେ ଯତ୍ନ ମିଶାଇ ଖାଇବ ସର୍ଦ୍ଦି ହୋଇବ ନାଶ ।

## ମେ ମାସ ୨ ସପ୍ତାହ — ୧୨ ପାଠ

ଏହି ମାସରେ ବାର୍ଷିକ ପରୀକ୍ଷା ହେଉଥିବାରୁ ୧୨ ଗୋଟି ପାଠ ଦିଆଯାଇଛି ଓ ସେ ସମସ୍ତ ପାଠ ପୁନରାଲୋଚନା ପାଇଁ ଉଦ୍ଦିଷ୍ଟ । ବର୍ଷ ମଧ୍ୟରେ ପଠିତ ପ୍ରତ୍ୟେକ ମାତ୍ରା, ଫଳା ଓ ଯୁକ୍ତାକ୍ଷର ପ୍ରତି ଦୃଷ୍ଟି ରଖି ଶିକ୍ଷକ ନୂତନ ନୂତନ ଶବ୍ଦ, ବାକ୍ୟ ଓ କ୍ଷୁଦ୍ର, କ୍ଷୁଦ୍ର ଅନୁଚ୍ଛେଦ ତିଆରି କରି ପଠନ ଓ ଲିଖନ ପାଇଁ ଦେବେ । ସର୍ବଦା ଅକ୍ଷରର ଗଠନ ଓ ଶୁଦ୍ଧ ଲିଖନ ପ୍ରତି ଦୃଷ୍ଟି ଦେବାକୁ ଭୁଲିବେ ନାହିଁ । କହିବା ବାହୁଲ୍ୟ ଯେ ଏହି ଶ୍ରେଣୀରୁ ହିଁ ଶିଶୁର ହସ୍ତାକ୍ଷର ପ୍ରତି ସମଧିକ ଦୃଷ୍ଟି ଦିଆଯିବା ଉଚିତ ।



# ଶ୍ରେଣୀ—ପ୍ରଥମ

## ବିଷୟ— 'ମାତୃଭାଷା' (ଗଳ୍ପ କଥନ - ସପ୍ତାହକୁ ୨ଟି ପିରିୟଡ଼)

### ଜୁନ୍ ୧ ସପ୍ତାହ — ୨ ପାଠ

୧ । ଚତୁର କୁଆ ଗପଟିକୁ ଶିକ୍ଷକ ଛାତ୍ରମାନଙ୍କ ଆଗରେ କହିବେ ।

୨ । ଚତୁର କୁଆ ଗପଟିକୁ ଛାତ୍ରମାନଙ୍କଠାରୁ ଆଦାୟ କରିବେ ।

### ଜୁଲାଇ ୪ ସପ୍ତାହ — ୮ ପାଠ

୧ । ବିଲୁଆର ଅଙ୍ଗୁର ଖିଆ ।

୨ । ବଗ ଓ କୋକିଳ ଦୁଇ ସଙ୍ଗାତ ।

୩ ଓ ୪ । ଲୋଭି କୁକୁର ।

### ଅଗଷ୍ଟ ୪ ସପ୍ତାହ — ୮ ପାଠ

୧ । ଲଙ୍ଗିତ ଠେକୁଆ ।

୨ । ଦରିଦ୍ରର ବନ୍ଧୁ ଗୋପବନ୍ଧୁ ।

୩ । ସ୍ୱଭାବରୁ ବୈଜ୍ଞାନିକ ।

୪ । ଜାତିର ପିତା ।

### ସେପ୍ଟେମ୍ବର ୪ ସପ୍ତାହ — ୮ ପାଠ

୧ । ସିଂହ ଓ ମୂଷା ।

୨ । କୋଣାର୍କ ମନ୍ଦିରର ଜନ୍ମ କଥା ।

୩ । କାଠୁରିଆ ଓ ଜଳ ଦେବତା ।

୪ । ଚତୁର ବିଲୁଆ ।

ପୁନରାଲୋଚନ । ୧ମ ପରୀକ୍ଷା ।

### ଅକ୍ଟୋବର ୩ ସପ୍ତାହ — ୬ ପାଠ

୧ । କାଠ ଯୋଡ଼ ବନ୍ଧ (କାଇମୁଣ୍ଡି ଗପ)

୨ । ବଉଳା ଗାଈ ।

୩ । ମାଙ୍କଡ଼ କୁମ୍ଭୀର ।

## ନଭେମ୍ବର ୪ ସପ୍ତାହ — ୮ ପାଠ

୧ । ବୈଷ୍ଣବ ବସନ୍ତ ।
୨ । ଚଲୁଣ୍ଡ ବେଣ୍ଡ କଥା ।
୩ । ହଂସ କହିଁଚ ।
୪ । ଉତ୍କଳ ଗୌରବ ମଧୁବାବୁ ।

## ଡ଼ିସେମ୍ବର ୩ ସପ୍ତାହ — ୬ ପାଠ

୧ । ଅନୁକରଣ ପ୍ରିୟ ମାଙ୍କଡ ।
୨ । ନାଙ୍ଗୁଣ୍ଡ ପିଲ ବାଜଅ ।
୩ । ପ୍ରଥମ ମହାକାଶଗୃଷ୍ଣ ଗ୍ରାଲନ୍ତ୍ରନା ।

## ଜାନୁଆରୀ ୪ ସପ୍ତାହ — ୮ ପାଠ

୧ । ବାନସାର ହରିଶ୍ଚନ୍ଦ୍ର ।
୨ । ମଣ୍ଡାଖିଆ ଅସୁର ।
୩ । ବୁଢ଼ି ଶୁଣ୍ଢେଆ ।
୧ । ପିତୃଭକ୍ତ ରାମଚନ୍ଦ୍ର ।

ଦ୍ୱିତୀୟ ପରୀକ୍ଷା ।

## ଫେବୃଆରୀ ୪ ସପ୍ତାହ — ୮ ପାଠ

୧ । ସହ୍ୱାଦ ବୀର ସୁରେନ୍ଦ୍ର ।
୨ । ରଚନାର ବାଦଶାହିକାର ।
୩ । ଭାଣ୍ଡିଆ ଓ ଭଟିଳା ।
୪ । ଗୁରୁ ନେହେରୁ ।

## ମାର୍ଚ୍ଚ ୩ ସପ୍ତାହ — ୬ ପାଠ

୧ । ବାଲ୍ମିକୀ ଋଷି ।
୨ । ସୈନିକରୁ ରାଷ୍ଟ୍ରପତି ।
୩ ଦରିଦ୍ର ପରିବାରରୁ ଭାରତର ପ୍ରଧାନମନ୍ତ୍ରୀ ଶାସ୍ତ୍ରୀ ।

### ଅପ୍ରେଲ ୪ ସପ୍ତାହ — ୮ ପାଠ

୧ । ଗୌତମ ।

୨ । ଦୁଇ ବନ୍ଧୁଙ୍କ ପିଠାକଥା ।

୩ । ବଣ କଇଁଚ ।

୪ । ମଣ୍ଡାଖିଆ ଅସୁର ।

### ମଇ ମାସ ୨ ସପ୍ତାହ — ୪ ପାଠ

୧ । ପୁନରାଲୋଚନା । ବାର୍ଷିକ ପରୀକ୍ଷା ।

ସୂଚନା— ଶିକ୍ଷକ ମହାଶୟ ସପ୍ତାହର ଦୁଇ ପିରିୟଡ଼ ମଧ୍ୟରୁ ଗୋଟିଏ ପିରିୟଡରେ ଗଳ୍ପଟିକୁ ଛାତ୍ରଛାତ୍ରୀ ମାନଙ୍କ ଆଗରେ ହାବଭାବ ମାଧ୍ୟମରେ ପ୍ରକାଶ କରିବେ ।

ଅନ୍ୟ ପିରିୟଡ଼ରେ ପ୍ରଶ୍ନ ଛଳରେ ଗଳ୍ପଟିକୁ ଆଦାୟ କରି ପୂର୍ଣ୍ଣ ଗଳ୍ପଟି ମୌଖିକ ଆତ୍ମ ପ୍ରକାଶ କରି ଛାତ୍ରମାନଙ୍କ ଠାରୁ ପାଠ ଆଦାୟ କରିବେ ।



## ଶ୍ରେଣୀ—ପ୍ରଥମ

ବିଷୟ— 'ମାତୃଭାଷା' (ପଦ୍ୟାବୃତ୍ତି ଓ ଅଭିନୟ) - ସପ୍ତାହକୁ ୨ ପିରିୟଡ଼

### ଜୁନ୍ ୧ ସପ୍ତାହ — ୨ ପାଠ

୧ । ଟିକମୋର ଗାଁଟିକୁ ପଦ୍ୟାବୃତ୍ତି ।

୨ । ପଦ୍ୟଟି ଆବୃତ୍ତି ସମୟରେ ଶିକ୍ଷକ ମହାଶୟ ବିଭିନ୍ନ ହାବଭାବ ମାଧ୍ୟମରେ ଆତ୍ମ ପ୍ରକାଶ କରିବା ପାଇଁ ଛାତ୍ରଛାତ୍ରୀ ମାନଙ୍କ ଆଗରେ ପଦ୍ୟଟିକୁ ପ୍ରକାଶ କରିବେ ।

### ଜୁଲାଇ ୪ ସପ୍ତାହ — ୮ ପାଠ

୧ । ରଜେ ଘର ଘର ଜାତନଣାଣ ।

୨ । ଝାଡ଼ୁଗୀତ— ଝାଡୁ ଭଳେ ରହେ ମୋର ।

## ଅଗଷ୍ଟ ୪ ସପ୍ତାହ — ୮ ପାଠ

୧ । ବାଇ ଚଢ଼େଇରେ ବାଇ ଚଢ଼େଇ ।

୨ । ଆ ଜହ୍ନ ମାମୁଁ ଶରଦଶଶୀ ।

## ସେପ୍ଟେମ୍ବର ୪ ସପ୍ତାହ — ୮ ପାଠ

୧ । ମନ୍ତୁ ମାଛୁ ।

୨ । ଡ଼ାମର କାଉ । ୧ମ ପରୀକ୍ଷା ।

## ଅକ୍ଟୋବର ୩ ସପ୍ତାହ — ୬ ପାଠ

୧ । ନିଜ କାମ ନିଜେ କର ।

## ନଭେମ୍ବର ୪ ସପ୍ତାହ — ୮ ପାଠ

୧ । ସାଧବ ବୋହୂଲୋ ସାଧବ ବୋହୂ ।

୨ । ପକ୍ଷୀ ବାଳକ ।

## ଡ଼ିସେମ୍ବର ୩ ସପ୍ତାହ — ୬ ପାଠ

୧ । ନୋଳ ଓ ବଗ ।

## ଜାନୁଆରୀ ୪ ସପ୍ତାହ — ୮ ପାଠ

୧ । ମାଙ୍କଡ଼ କୁମ୍ଭୀର ।

୨ । ଟିଲ ବାଜଅ । ୨ୟ ପରୀକ୍ଷା ।

## ଫେବୃଆରୀ ୪ ସପ୍ତାହ — ୮ ପାଠ

୧ । ଆମେତ ଗାନ୍ଧିଚେଲା ।

୨ । ବାଘ ଓ ଲୋଭୀ ବ୍ରାହ୍ମଣ ।

## ମାର୍ଚ୍ଚ ୩ ସପ୍ତାହ — ୬ ପାଠ

୧ । ନେଉଳ ବ୍ରାହ୍ମଣ ।

## ଏପ୍ରିଲ ୪ ସପ୍ତାହ — ୮ ପାଠ

୧ । ବିଲେଇ ବେକରେ ଘଣ୍ଟି ।

୨ । ଝିଣ୍ଟିକା ଓ ପିମ୍ପୁଡ଼ି ।

### ମଇ ୨ ସପ୍ତାହ — ୪ ପାଠ

ପୁନରାବୃତ୍ତି ଓ ବାର୍ଷିକ ପରୀକ୍ଷା ।

କୋମଳମତି ଛାତ୍ରମାନଙ୍କ ମନକୁ ଆକର୍ଷିତ କରିବା ପାଇଁ ଶିକ୍ଷକ ମହାଶୟ ବିଭିନ୍ନ ସରଳ ସରଳ ସ୍ୱର ସମ୍ବଳିତ କେତେ ଗୁଡ଼ିଏ ଗୀତ ନିଜେ ଆବୃତ୍ତି କରିବା ସଙ୍ଗେ ସଙ୍ଗେ ଛାତ୍ର ମାନଙ୍କୁ ଆବୃତ୍ତି କରିବାକୁ କହିବେ ।

—:୦:—

## ଶ୍ରେଣୀ—ପ୍ରଥମ

ବିଷୟ— 'ମାତୃଭାଷା' (କଥୋପକଥନ) - ସପ୍ତାହକୁ ୨ଟି ପିରିୟଡ଼)

### ଜୁନ ୧ ସପ୍ତାହ — ୨ ପାଠ

୧ ଓ ୨ । ଶିକ୍ଷକ ମହାଶୟ ପ୍ରଥମେ ପିଲାମାନଙ୍କ ସହିତ ତାଙ୍କ ଘର ବିଷୟରେ କଥୋପକଥନ କରିବେ ।

### ଜୁଲାଇ ୪ ସପ୍ତାହ — ୮ ପାଠ

୧ । ଛାତ୍ରଛାତ୍ରୀ ମାନଙ୍କ ପରିଚୟ ଓ ନିଜର ପରିଚୟ ପ୍ରଦାନ ।

୨ । ଶ୍ରେଣୀ କୋଠରୀ ଓ ସହକାରୀ ଶିକ୍ଷକ ମାନଙ୍କ ସମ୍ପର୍କରେ କଥୋପକଥନ ।

୩ । ସ୍କୁଲର ଖେଳ ।

୪ । ପରିଷ୍କାର ପରିଚ୍ଛନ୍ନତା ବିଷୟରେ ।

### ଅଗଷ୍ଟ ୪ ସପ୍ତାହ — ୮ ପାଠ

୧ । ନିଜର ଗାଁ ।

୨ । ଗାଁର ପଡ଼ପଡ଼ୋଶୀ ।

୩ । ଅଗଷ୍ଟ ପରବ ।

୪ । ବର୍ଷାଦିନେ ଗାଁ ରାସ୍ତାର ଅସୁବିଧା ।

## ସେପ୍‌ଟେମ୍ବର ୪ ସପ୍ତାହ — ୮ ପାଠ

୧ । ଖୁଦୁରକୁଣୀ ଓଷା ।
୨ । ଗାଁର ଠାକୁର ମନ୍ଦିର ।
୩ । ବଗିଚାର ବିଭିନ୍ନ ଫୁଲ ବିଷୟ ।
୪ । ଗଣେଶ ପୂଜା ବିଷୟରେ କଥୋପକଥନ ।

ପ୍ରଥମ ପରୀକ୍ଷା ।

## ଅକ୍ଟୋବର ୩ ସପ୍ତାହ — ୬ ପାଠ

୧ । ଦଶହରା ଛୁଟି କିପରି କଟାଇଲି ।
୨ । ସ୍କୁଲ ବଗିଚା ।
୩ । ସ୍କୁଲଗୃହ ପରିଷ୍କାର ପରିଚ୍ଛନ୍ନତା ।

## ନଭେମ୍ବର ୪ ସପ୍ତାହ — ୮ ପାଠ

୧ । ବିଭିନ୍ନ ପଶୁ ପକ୍ଷୀଙ୍କର ସ୍ୱର ।
୨ । ଶିଶୁ ଦିବସ ।
୩ । କାର୍ତ୍ତିକ ପୂର୍ଣ୍ଣିମା ।
୪ । ଶୀତ ଦିନର ସକାଳ ।

## ଡିସେମ୍ବର ୩ ସପ୍ତାହ — ୬ ପାଠ

୧ । ଗାଈ ଉପକାରିତା ।
୨ । ପାଚିଲା ଧାନ କ୍ଷେତ ।
୩ । ମାଣବସା ଓଷା ତଥା କଥୋପକଥନ ।

## ଜାନୁଆରୀ ୪ ସପ୍ତାହ — ୮ ପାଠ

୧ । ଶାନ୍ତ ବର୍ଣ୍ଣମୀ ।
୨ । ଜାତୀୟ ପତାକା ।
୩ । ସରସ୍ୱତୀ ପୂଜା ।
୪ । ପୁନରାଲୋଚନା ଓ ୨ୟ ପରୀକ୍ଷା ।

## ଫେବୃଆରୀ ୪ ସପ୍ତାହ — ୮ ପାଠ

୧ । ଗୃହ ପାଳିତ ପକ୍ଷୀ ।
୨ । ବର୍ଦ୍ଧନ୍ତ ଫଳ ।
୩ । ହାତ, ଗୋଡ଼ ଓ ଆଖି, ନାକ, ଚର୍ମର ଉପକାରିତା ।
୪ । କୁକୁରର ଉପକାରିତା ।

## ମାର୍ଚ୍ଚ ୩ ସପ୍ତାହ — ୬ ପାଠ

୧ । ଦୋଳ ।
୨ । ଗାଁ ପୋଖରୀ ।
୩ । ଗାଁ ଧୋବା ।

## ଅପ୍ରେଲ ୪ ସପ୍ତାହ — ୮ ପାଠ

୧ । ନିଜ ସ୍କୁଲର ହାତ କାମ ।
୨ । ଗାଁ ବଢ଼େଇଶାଳ ।
୩ । ଦୋକାନଘାଟ ।
୪ । କମାର ଶାଳ ।

## ମଇ ୨ ସପ୍ତାହ — ୪ ପାଠ

୧ । ପୁନରାବୃତ୍ତି ଓ ଶେଷ ପରୀକ୍ଷା ।

ସୂଚନା — କଥୋପକଥନ ସପ୍ତାହକୁ ଦୂର ପରିସ୍ଥିତି ବ୍ୟବହାର କରାଯିବ । ଶିକ୍ଷକ ମହାଶୟ ଛାତ୍ରମାନଙ୍କ ମନରେ କୌତୂହଳ ଜାଗ୍ରତ କରାଇବା ପାଇଁ ପରିଚିତ ପଦାର୍ଥବାଣୀ, ଗୃହପାଳିତ ପଶୁପକ୍ଷୀ ନିଜର ପରିବାର ବର୍ଗଙ୍କ ବିଷୟରେ ଆଲୋଚନା କରିବା ପାଇଁ କଥୋପକଥନ କରିବେ ।



# ବିଜ୍ଞପ୍ତି

## ପ୍ରାଥମିକ ଶିକ୍ଷକ ସମାଜର ଜାତୀୟ ପ୍ରତିଷ୍ଠାନ

"ନ୍ୟାସନାଲ ପ୍ରେସ" ପ୍ରକାଶିକା: –

ପୁରୀଠାରେ ଥିବା ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନ "ନ୍ୟାସନାଲ ପ୍ରେସ" କର୍ତ୍ତୃକ ଶିକ୍ଷକ, ସ୍କୁଲ ଏବଂ ବିଦ୍ୟାଳୟମାନଙ୍କରେ ନିତ୍ୟବ୍ୟବହାର ଉପଯୋଗୀ ନିମ୍ନଲିଖିତ ଅତ୍ୟାବଶ୍ୟକୀୟ ଜିନିଷ ଗୁଡିକ ଛପା ହୋଇ ଗଚ୍ଛିତ ଅଛି । ଶିକ୍ଷକ ବନ୍ଧୁମାନଙ୍କଠାରୁ ଅର୍ଡର ପାଇବା ମାତ୍ରେ ସୁବିଧାରେ ତୁରନ୍ତ ଭି: ପି: ଦ୍ୱାରା ଯୋଗାଇ ଦିଆଯାଏ ।

୧ । ସ୍କୁଲ ଉପସ୍ଥାନ ବହି ।

୨ । ଶିକ୍ଷକ ଉପସ୍ଥାନ ବହି ।

୩ । ପ୍ରବେଶିକା ବହି ।

୪ । ସାର୍ଟିଫିକେଟ ବହି ।

୫ । ଶିକ୍ଷଣୀୟ ସୁଦୃଶ୍ୟ ମଟ୍ଟୋ ।

୬ । ରିଟର୍ଣ୍ଣ ଫର୍ମ ।

୭ । ପ୍ରୋଗ୍ରେସ ରିପୋର୍ଟ ଫର୍ମ ।

୮ । ୭ମ ଶ୍ରେଣୀ ପରୀକ୍ଷାର୍ଥୀଙ୍କ ପାଇଁ ।

(କ) ଡି· ଆର ଫର୍ମ ।

(ଖ, ମାର୍କସିଟ୍ ଫର୍ମ ।

(ଗ) ଆଡ୍‌ମିଟ୍ କାର୍ଡ ।

୯ । ପାଠ୍ୟଖସଡ଼ା [ ସମସ୍ତ ଶ୍ରେଣୀ ପାଇଁ ସ୍ୱତନ୍ତ୍ର

୧୦ । ପ୍ରଶ୍ନପତ୍ର:- ସିଲାବସ ଅନୁଯାୟୀ ବର୍ଷମଧ୍ୟରେ ହେଉଥିବା ତିନୋଟି ପରୀକ୍ଷାପାଇଁ ଛପା ପ୍ରଶ୍ନପତ୍ର ବିଭିନ୍ନ ଜିଲାର ଅଭିଜ୍ଞ ଶିକ୍ଷକମାନଙ୍କୁ ନେଇ ଗଠିତ ପ୍ରଶ୍ନବୋର୍ଡ ଦ୍ୱାରା ପ୍ରସ୍ତୁତ ହୋଇଥାଏ ।

---

ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନ ପକ୍ଷରୁ ନ୍ୟାସନାଲ ପ୍ରେସରେ ପୁରୀଠାରେ ମୁଦ୍ରିତ — ୧୯୮୫